# ଜୁରାସିକ୍ ପାର୍କର
# କଥା ଓ କାହାଣୀ



ବସନ୍ତ ସାଇନ୍ସ ଆଣ୍ଡ ଟେକ୍ନୋଲୋଜି ଫାଉଣ୍ଡେସନ

# ଜୁରାସିକ୍ ପାର୍କର
# କଥା ଓ କାହାଣୀ

ଲେଖକ ଦ୍ୱୟ :
ଡକ୍ଟର ପ୍ରଣବ କୁମାର ଘୋଷ
ଡକ୍ଟର ରମେଶ ଚନ୍ଦ୍ର ପରିଡ଼ା




ପ୍ରକାଶକ :
ବସନ୍ତ ସାଇନ୍ସ ଆଣ୍ଡ ଟେକ୍ନୋଲୋଜି ଫାଉଣ୍ଡେସନ
ଡଗରପଡ଼ା, କଟକ -୨

# ଜୁରାସିକ୍ ପାର୍କର କଥା ଓ କାହାଣୀ

ଲେଖକ : ଡକ୍ଟର ପ୍ରଣବ କୁମାର ଘୋଷ
ଡକ୍ଟର ରମେଶ ଚନ୍ଦ୍ର ପରିଡ଼ା

ପ୍ରକାଶକ : ବସନ୍ତ ସାଇନ୍ସ ଆଣ୍ଡ ଟେକ୍ନୋଲୋଜି ଫାଉଣ୍ଡେସନ
ଡଗରପଡ଼ା, କଟକ - ୨

ପ୍ରଥମ ପ୍ରକାଶ ୨୦୦୬

ମୁଦ୍ରଣ : ସ୍ପିଡ୍ ପ୍ରିଣ୍ଟ
ସତୀଚଉରା ରୋଡ଼, କଟକ - ୨
ଦୂରଭାଷ : ୦୬୭୧-୩୬୪୧୬୪

ମୂଲ୍ୟ : ଟ. ୧୪୦.୦୦ (ଏକଶହ ଚାଳିଶି ଟଙ୍କା) ମାତ୍ର

## JURASIC PARKRA KATHA O KAHANI

Writer : DR. PRANAB KUMAR GHOSH
DR. RAMESH CHANDRA PARIDA

Published by : BASANTA SCIENCE AND TECNOLOGY FOUNDATION
Dagarpara, Cuttack - 2

First Edition : 2006

Printed at : SPEED PRINT
Satichoura Chowk, Cuttack - 2
Ph. No. : 0671-364164

Price : Rs. 140.00 (Rupees One hundred Forty) Only

# ଉତ୍ସର୍ଗ



ପୁସ୍ତକଟି ଉତ୍ସର୍ଗ କରୁଛୁ ସେହିମାନଙ୍କୁ,
ଯେଉଁମାନେ ପ୍ରକୃତିକୁ ଭଲ ପାଆନ୍ତି ।

-ଲେଖକ ଦ୍ୱୟ




ଡାଇନୋସର ନାମଟି ଶୁଣିଲେ ମାନସପଟରେ ଭାସିଆସେ କେଉଁ ପ୍ରାକ୍-ଐତିହାସିକ ଯୁଗର କେତେକ ଭୟଙ୍କର ଦୈତ୍ୟାକୃତି ଜୀବମାନଙ୍କର ଛବି । ତେବେ ସେମାନଙ୍କୁ କେହି କେବେ ଚକ୍ଷୁରେ ଦେଖିନି । ଏଣୁ ମନରେ କୌତୁହଳ ଜାତ ହୋଇଛି ସେମାନଙ୍କ ସମ୍ପର୍କରେ ସବିଶେଷ ଜାଣିବା ପାଇଁ । ସେହି କୌତୁହଳ ମେଣ୍ଟାଇବା ଲାଗି ବିଭିନ୍ନ ମହଲରେ ବର୍ଷ ବର୍ଷ ଧରି ଉଦ୍ୟମ ହୋଇଆସିଛି । ଫଳରେ ଡାଇନୋସରକୁ ମୁଖ୍ୟ ଚରିତ୍ର କରି ଅସଂଖ୍ୟ ଗଳ୍ପ ଲେଖାଯାଇଛି, ସୁନ୍ଦର ସୁନ୍ଦର ଚିତ୍ରମାନ ଅଙ୍କାଯାଇଛି । ବୈଜ୍ଞାନିକମାନଙ୍କ ଦ୍ୱାରା ପ୍ରଦତ୍ତ ନାନା ତଥ୍ୟ ଓ ବିବରଣୀକୁ ଭିତ୍ତି କରି ସେମାନଙ୍କ ଜୀବନ ଓ ଇତିହାସ ସମ୍ପର୍କରେ ବିଭିନ୍ନ ଭାଷାରେ ଅସଂଖ୍ୟ ପୁସ୍ତକ ପ୍ରକାଶିତ ହୋଇଛି ।

କେଇ ବର୍ଷ ତଳେ ଡାଇନୋସରକୁ ନେଇ ତିଆରି ହୋଇଥିବା 'ଜୁରାସିକ୍ ପାର୍କ' ନାମକ ଚଳଚ୍ଚିତ୍ରଟି ସାରା ପୃଥିବୀରେ ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା । ଫଳରେ ଡାଇନୋସରମାନଙ୍କ ସମ୍ପର୍କରେ ଅଧିକ ଜାଣିବାର ଆଗ୍ରହ ସମସ୍ତଙ୍କ ମନରେ ଆହୁରି ବଳବତ୍ତର ହୋଇପଡ଼ିଛି । ସତେ ଯେପରି ସାଢ଼େ ଛଅକୋଟି ବର୍ଷ ପୂର୍ବରୁ ଏହି ପୃଥିବୀରେ ବିଚରଣ କରୁଥିବା ଏହି ଜୀବଗୁଡ଼ିକ ପୁଣି ମନୁଷ୍ୟର ମନ ଓ ଚିନ୍ତା ରାଜ୍ୟରେ ଜୀବନ୍ତ ହୋଇଉଠିଛନ୍ତି ।

ଏହି ପୁସ୍ତକଟି ତିନୋଟି ଅଧ୍ୟାୟକୁ ନେଇ ଗଠିତ । ପ୍ରଥମ ଅଧ୍ୟାୟରେ ଡାଇନୋସରମାନଙ୍କ ସମ୍ବନ୍ଧରେ ବୈଜ୍ଞାନିକ ଦୃଷ୍ଟିକୋଣକୁ ଆଲେଖ୍ୟ ହୋଇଛି । ଦ୍ୱିତୀୟ ଅଧ୍ୟାୟ ସ୍ପିଲବର୍ଗ ସାହେବଙ୍କ 'ଜୁରାସିକ୍ ପାର୍କ' ଚଳଚ୍ଚିତ୍ରର କାହାଣୀକୁ ନେଇ ଲିପିବଦ୍ଧ ।

ତୃତୀୟ ଅଧ୍ୟାୟଟି ସମ୍ପୂର୍ଣ୍ଣ ବୈଜ୍ଞାନିକ ଫିକ୍‌ସନ୍ । ଯାହାର ଚିନ୍ତା ଚେତନା ଆକାଶଯାଏ ପରିବ୍ୟାପ୍ତ । ଏହା କୌତୁହଳୀ ଓ ଜ୍ଞାନପିପାସୁ ଆବାଳବୃଦ୍ଧ ବନିତା ସମସ୍ତଙ୍କୁ ଆଖି ଆଗରେ ରଖି ରଚିତ ହୋଇଛି । ଏଥିରେ ବିଭିନ୍ନ ପ୍ରଜାତିର ଡାଇନୋସରକୁ 'କଳାକାର', ଦୈତ୍ୟକୁ 'ହିରୋ' ଏବଂ ଜୁମିନାକୁ 'ହିରୋଇନ୍' ହିସାବରେ ନିଆଯାଇ ତଥ୍ୟଭିତ୍ତିକ ଫିକ୍‌ସନ୍ ଲେଖାଯାଇଛି ।

ପୁସ୍ତକଟି ପାଠକମାନଙ୍କ ଦ୍ୱାରା ଆଦୃତ ହେଲେ ଲେଖକଦ୍ୱୟଙ୍କ ଶ୍ରମ ସାର୍ଥକ ହେବ ।

– ଲେଖକ ଦ୍ୱୟ

# ସୂଚୀପତ୍ର

**ବିଷୟ** **ପୃଷ୍ଠା**

# ପ୍ରଥମ ଅଧ୍ୟାୟ

# ଜୁରାସିକ୍ ପାର୍କ ଏକ ବୈଜ୍ଞାନିକ ପରିଚୟ

ଡାଇନୋସର ବିଷୟରେ ଜାଣିବାର ଇଚ୍ଛା ସମସ୍ତଙ୍କର ଅଛି । ଏମାନଙ୍କ ହାଡ଼, ଦାନ୍ତ, ଅଣ୍ଡା, କଙ୍କାଳ ଇତ୍ୟାଦିର ଜୀବାଶ୍ମ ବିଭିନ୍ନ ସ୍ଥାନରୁ ବିଜ୍ଞାନୀମାନେ ଆବିଷ୍କାର କରିଛନ୍ତି । ଡାଇନୋସରମାନଙ୍କୁ ନେଇ ବହୁ ଗବେଷଣା ଓ ପରୀକ୍ଷାନିରୀକ୍ଷା ଚାଲିଛି । ମନୁଷ୍ୟର ମନ ତଥାପି ସନ୍ତୁଷ୍ଟ ହୋଇନି । ଆହୁରି ଅଧିକ କିଛି ଜାଣିବାର ଇଚ୍ଛା ତା'ର ବଢ଼ିଛି । ସେହି ଜ୍ଞାନପିପାସୁ ମନକୁ ଭରପୂର କରିବା ପାଇଁ କୋଟିକୋଟି ବର୍ଷପୂର୍ବେ ପୃଥିବୀବକ୍ଷରେ ବିଚରଣ କରୁଥିବା ସେହି ଜୀବମାନଙ୍କ ସମ୍ପର୍କରେ ଯାବତୀୟ ବୈଜ୍ଞାନିକ ଓ ଆଧୁନିକ ତଥ୍ୟକୁ ନେଇ ଏହି ପ୍ରଥମ ଅଧ୍ୟାୟଟି ।

## ଜୁରାସିକ୍ ପାର୍କ ଶବ୍ଦର ଉତ୍ପତ୍ତି :

ଜୁରାସିକ୍ ଶବ୍ଦଟା ଏ ପର୍ଯ୍ୟନ୍ତ ଇତିହାସ କିମ୍ବା ଭୂଗୋଳ ବହି ଭିତରେ ହିଁ ଏକପ୍ରକାର ଆବଦ୍ଧ ହୋଇ ରହିଥିଲା । ତେଣୁ ସାଧାରଣ ମଣିଷ ମନରେ ଏହା ସମ୍ବନ୍ଧରେ ସେତେଟା ଜାଣିବାର ଆଗ୍ରହ ନ ଥିଲା । କିନ୍ତୁ ବର୍ତ୍ତମାନ ଶବ୍ଦଟା ସଭିଙ୍କ ମୁହଁରୁ ଶୁଣାଯାଉଛି - ସତେ ଯେପରି ସମସ୍ତେ ଏହାର ପରିଚୟ ପାଇସାରିଛନ୍ତି । ଅତଏବ ଏଥି ସମ୍ପର୍କରେ ଅଧିକରୁ ଅଧିକ ଜାଣିବାର ଆଗ୍ରହ କମ୍ ବେଶୀ ସମସ୍ତଙ୍କର ମଧ୍ୟରେ ଜାଗ୍ରତ ହୋଇଛି । ସମସ୍ତେ ଏବେ ଜାଣିବାକୁ ଚାହୁଁଛନ୍ତି ଯେ 'ଜୁରାସିକ୍' ଶବ୍ଦଟିର ଉତ୍ପତ୍ତି କେଉଁଠୁ, କାହିଁକି ଏହାର ଏତେ ପ୍ରଚାର ଓ ପ୍ରସାର ଚାଲିଛି, କ'ଣ ଏହାର ଗୁରୁତ୍ୱ ଏବଂ ମନୁଷ୍ୟର ସଭ୍ୟତା ଅଥବା ପୃଥିବୀ ଇତିହାସ ସଙ୍ଗେ ଏହାର କି ସମ୍ପର୍କ ଅଛି, ଇତ୍ୟାଦି ଇତ୍ୟାଦି... ।

ବାଘ, ସିଂହ, ହରିଣ, ହାତୀ ଆଦି ଜୀବମାନଙ୍କୁ ସଂରକ୍ଷିତ କରିବା ଲାଗି ପ୍ରତିଷ୍ଠିତ ବିଭିନ୍ନ ପାର୍କ ସହିତ ଆମେ ଖୁବ୍ ପରିଚିତ । ତେବେ 'ଜୁରାସିକ୍ ପାର୍କ' କ'ଣ ସେହିଭଳି ଏକ ସଂରକ୍ଷିତ ଅଞ୍ଚଳର ନାମ ? ତା'ହେଲେ ଏହି ବିଚିତ୍ର ନାମଧାରୀ ପାର୍କଟି କେଉଁଠି ଅବସ୍ଥିତ ?

ପ୍ରକୃତରେ ମାଇକେଲ୍ କ୍ରିପ୍‌ଟନଙ୍କ ରଚିତ ଏକ କଳ୍ପନା ପ୍ରସୂତ ଉପନ୍ୟାସର କାହାଣୀକୁ ଅବଲମ୍ବନ କରି ବିଖ୍ୟାତ ଚଳଚ୍ଚିତ୍ର ନିର୍ମାତା ଷ୍ଟିଫେନ୍ ସ୍ପିଲବର୍ଗ ଚଳଚ୍ଚିତ୍ରଟିଏ ନିର୍ମାଣ କରିଥିଲେ

କିଛି ବର୍ଷତଳେ । ଦୁନିଆସାରା ଚହଳ ପକାଇଥିବା ଏହି ଚଳଚ୍ଚିତ୍ରର ନାମ ଥିଲା - 'ଜୁରାସିକ୍ ପାର୍କ' ।

ଏଥିରେ ପ୍ରଧାନଚରିତ୍ର ରୂପେ ଉପସ୍ଥାପନ କରାଯାଇଛି 'ଜୁରାସିକ୍' ଯୁଗର ଅତିକାୟ ପ୍ରାଣୀ ଡାଇନୋସରକୁ । ଆଜିଠାରୁ ପ୍ରାୟ ସାଢ଼େ ଛ' କୋଟି ବର୍ଷ ପୂର୍ବରୁ ସେହି ଜୀବଗୁଡ଼ିକ ସିନା ପୃଥିବୀପୃଷ୍ଠରୁ ବିଲୀନ ହୋଇଯାଇଛନ୍ତି, ହେଲେ ସେମାନଙ୍କର ଅସ୍ତିତ୍ୱ ବିଭିନ୍ନ ବିଜ୍ଞାନ ପୁସ୍ତକର ପୃଷ୍ଠାମାନଙ୍କରେ ଏବଂ ଗବେଷକମାନଙ୍କ ନିବନ୍ଧଗୁଡ଼ିକରେ ଲିପିବଦ୍ଧ ହୋଇରହିଛି ।



ଇଉପାରକାରିୟା ଏବଂ ଅରନିଥୋସାକାସମାନଙ୍କ ଭଳି ଆଦିମ ପ୍ରାଣୀଠାରୁ ହିଁ ବିବର୍ତ୍ତିତ ହୋଇ ଡାଇନୋସରମାନେ ଚାରିପାଦରେ ଚଲାବୁଲା କରିପାରୁଥିଲେ ।

ସ୍ପିଲ୍‌ବର୍ଗ ତାଙ୍କର ଚଳଚ୍ଚିତ୍ର ମାଧ୍ୟମରେ ଏହି ବିଲୁପ୍ତ ଦୈତ୍ୟକାୟ ଜୀବମାନଙ୍କର ଜୀବନ୍ତ ଅବସ୍ଥାକୁ ଫୁଟେଇ ପାରିଛନ୍ତି । କେବଳ ସେତିକି ନୁହେଁ, ତହିଁରେ ସେ ଆଧୁନିକ ବିଜ୍ଞାନର କ୍ରିୟାକୌଶଳ ପ୍ରୟୋଗ କରି ଗବେଷଣାଗାର ଭିତରେ ସେମାନଙ୍କୁ ସୃଷ୍ଟି ମଧ୍ୟ କରିଛନ୍ତି । ତା'ପରେ ଦେଖାଇଛନ୍ତି ସେମାନଙ୍କ ସହ ମନୁଷ୍ୟର ଲୋମହର୍ଷକ ସହାବସ୍ଥାନ ।



କୃତ୍ରିମ ଅଣ୍ଡାର ଖୋଳପା ଭାଙ୍ଗି ଶିଶୁ ଡାଇନୋସର୍‌ଟିଏ ବାହାରି ଆସିଲା । 'ଜୁରାସିକ ପାର୍କ' ଚଳଚ୍ଚିତ୍ରର ଗୋଟିଏ ଆବେଗମୟ ଦୃଶ୍ୟ ।

ସ୍ୱାଭାବିକ କାରଣରୁ ସ୍ପିଲ୍‌ବର୍ଗ ତାଙ୍କର 'ଜୁରାସିକ୍ ପାର୍କ' ଚଳଚ୍ଚିତ୍ର ଦ୍ୱାରା ସାରା ପୃଥିବୀରେ ଆଲୋଡ଼ନ ସୃଷ୍ଟି କରିବା ପାଇଁ ସକ୍ଷମ ହୋଇପାରିଛନ୍ତି । ଏହା ଛୋଟରୁ ବଡ଼ ସବୁ ଶ୍ରେଣୀର ମନୁଷ୍ୟ ମଧ୍ୟରେ 'ଜୁରାସିକ୍ ପାର୍କ' ଓ ତାହାର ଡାଇନୋସରଙ୍କ ସମ୍ପର୍କରେ ଜାଣିବାର ତୀବ୍ର ଆଗ୍ରହ ସୃଷ୍ଟି କରିଛି ।

ବିଗତ ସାଢ଼େ ତିନିଶହ କୋଟି ବର୍ଷ ମଧ୍ୟରେ ଜୀବଜଗତରେ ନାନା ବିବର୍ତ୍ତନ ସଂଘଟିତ ହୋଇଯାଇଛି । 'ଜୀବାଶ୍ମ'କୁ ଗବେଷଣା କରି ଭୂତାତ୍ତ୍ୱିକମାନେ ପୃଥିବୀର ଇତିହାସ ରଚନା କରିଛନ୍ତି । ସେମାନେ ଏହି ଦୀର୍ଘକାଳକୁ ତିନୋଟି ମହାଯୁଗ ଏବଂ ପ୍ରତି ମହାଯୁଗକୁ କେତୋଟି ଯୁଗରେ ଭାଗ କରି ଦେଇଛନ୍ତି ।

ସେହି ମହାଯୁଗମାନଙ୍କ ମଧ୍ୟରୁ ଦ୍ୱିତୀୟଟିର ନାମ ମେସୋଜୋୟିକ ମହାଯୁଗ । ଏହାକୁ ପୁଣି ଟ୍ରାୟାସିକ୍, ଜୁରାସିକ୍ ଓ କ୍ରିଟୋସିୟାସ ନାମରେ ତିନି ଯୁଗ ଦ୍ୱାରା ବିଭକ୍ତ କରାଯାଇଛି ।

ଏହି ତିନିଯୁଗକୁ ଏକତ୍ର ମିଳିତ କରି କେହି କେହି ଏହାକୁ ଅତିକାୟ ଡାଇନୋସରଙ୍କ ଯୁଗ ଭାବରେ ଅଭିହିତ କରିଥାନ୍ତି । ତେବେ, ଡାଇନୋସରମାନଙ୍କର ବିଶେଷ ଲୀଳାଖେଳା ଚାଲିଥିଲା 'ଜୁରାସିକ୍' ଯୁଗରେ । ସେହି କାରଣରୁ ଡାଇନୋସର ଓ ଜୁରାସିକ୍ ଏହି ଶବ୍ଦ ଦିଓଟି ପରସ୍ପର ସହ ଓତପ୍ରୋତଃ ଭାବରେ ଜଡ଼ିତ ଏବଂ ତହିଁରୁ ଗୋଟିଏ ଶବ୍ଦ ଉଲ୍ଲେଖ କରିବାମାତ୍ରେ ଅନ୍ୟଟି ଆମ ମନକୁ ଚାଲିଆସେ ସ୍ୱତଃସ୍ଫୁର୍ତ୍ତ ଭାବରେ ।

ଫ୍ରାନ୍ସର ସେଭୋଲିନ୍ ପର୍ବତ ଏବଂ ସୁଇଜରଲାଣ୍ଡ ସୀମାବର୍ତ୍ତୀ ଆଲପାଇନ୍ ପର୍ବତମାଳାର ମଧ୍ୟଦେଶରେ ଅଛି ବ୍ଲାଙ୍କ୍ ଶୃଙ୍ଗ । ଏହି ଶୃଙ୍ଗଟିର ଉଚ୍ଚତା ପ୍ରାୟ ୧୫, ୭୮୦ ଫୁଟ୍ । 'ଜୁରା' ନାମରେ ଗୋଟିଏ ଛୋଟ ପଥରର ପର୍ବତ ଏହି ଶୃଙ୍ଗଟିର ପାଖରେ ରହିଛି । ସୌନ୍ଦର୍ଯ୍ୟ ଦୃଷ୍ଟିର ସ୍ଥାନଟି ଅତି ମନୋରମ । ଏହି ପର୍ବତର ଚତୁଃପାର୍ଶ୍ୱରେ ଗଢ଼ି ଉଠିଛି ଏକ ବିରାଟ ପର୍ଯ୍ୟଟନ କେନ୍ଦ୍ର । ଏଠାରେ ରହିଛି ସବୁଜ ବନାନୀ ଘେରା ପର୍ବତମାଳା ଏବଂ ଏହାର ମଧ୍ୟଭାଗରୁ ଡାବ ଏବଂ ଏଇନ୍ ନାମରେ ଦୁଇଟି ନଦୀର ଉତ୍ପତ୍ତି ହୋଇଛି । ନଦୀର ତଟ ଦେଶରେ ଏକ ଜଳବିଦ୍ୟୁତ୍ କେନ୍ଦ୍ରଟିଏ ମଧ୍ୟ ଗଢ଼ି ଉଠିଛି । ଭୂତାତ୍ତ୍ୱିକ ଯୁଗ 'ଜୁରାସିକ୍' ଶବ୍ଦଟିର ଉଦ୍ଭବ ହୋଇଛି ସୁଇଜରଲ୍ୟାଣ୍ଡର ଏହି ଜୁରା ପର୍ବତର ନାମାନୁସାରେ ।

ସ୍ପିଲ୍‌ବର୍ଗ ଅରଣ୍ୟ ପାହାଡ଼ ଘେରା ଏଇପରି ଏକ ମନଲୋଭା ସ୍ଥାନଟିକୁ ତାଙ୍କର 'ଜୁରାସିକ୍ ପାର୍କ' ଚଳଚ୍ଚିତ୍ର ତିଆରି କରିବା ପାଇଁ ବାଛି ନେଇଥିଲେ । ଏଥିରେ ସ୍ୱତନ୍ତ୍ର ଭାବରେ ସଂରକ୍ଷିତ ଅରଣ୍ୟ ମଧ୍ୟରେ 'ଜୁରାସିକ୍' ଯୁଗର କେତୋଟି ପ୍ରଜାତିର ଡାଇନୋସର ରଖାଯାଇଥିବା ଦୃଶ୍ୟମାନ ଦେଖିବାକୁ ମିଳିଥାଏ । ସେଥିପାଇଁ ଏହି ଚଳଚ୍ଚିତ୍ରର ନାମ ରଖାଯାଇଥିଲା 'ଜୁରାସିକ୍ ପାର୍କ' ।

କିନ୍ତୁ, ପ୍ରକୃତରେ ଅସଲ 'ଜୁରାସିକ୍ ପାର୍କ'ର ଅସ୍ତିତ୍ୱ ଥିଲା ପ୍ରାକ୍-ଐତିହାସିକ ପୃଥିବୀପୃଷ୍ଠରେ । ସେ ପାର୍କକୁ ପ୍ରକୃତି ହିଁ ନିଜ ହାତରେ ତିଆରି କରିଥିଲା ।

ଡାଇନୋସର କ'ଣ ?

୧୮୨୨ ଖ୍ରୀ:ଅ:ରେ ପ୍ରଥମେ ଡ଼ାଇନୋସର ସମ୍ପର୍କରେ ମନୁଷ୍ୟର ଚିନ୍ତା ଓ କଳ୍ପନାର ସୂତ୍ରପାତ ହେଲା । ଏ ବର୍ଷ ଜନୈକ ବ୍ରିଟିଶ୍ ଡ଼ାକ୍ତର ତଥା ଜୀବାଶ୍ମ ସଂଗ୍ରାହକ ଜି.ଏ. ମ୍ୟାନଟେଲ୍ ଏବଂ ତାଙ୍କର ପତ୍ନୀ ମେରୀ ମ୍ୟାନଟେଲ୍ ହଲାଣ୍ଡର ଏକ ଅଞ୍ଚଳରୁ ଗୋଟିଏ ଅଜଣା ଜୀବର ବିଶାଳ ଆକୃତିର କେତୋଟି ଦାନ୍ତ ଆବିଷ୍କାର କଲେ । ଆକୃତିରେ ସେହି ଦାନ୍ତଗୁଡ଼ିକର ବହୁରୂପୀର ଦାନ୍ତ ସହିତ ଯଥେଷ୍ଟ ସମାଞ୍ଜସ୍ୟ ଥିଲା, କିନ୍ତୁ ଆକାରରେ ତାହା ଥିଲା କେତେ ଶହ ଗୁଣରେ ବଡ଼ । ୧୮୨୫ ଖ୍ରୀ:ଅ:ରେ ଡଃ ମ୍ୟାନଟେଲ୍ ଅଜଣା ଅଶୁଣା ଏହି ଅତିକାୟ ଦାନ୍ତଧାରୀ ପ୍ରାଣୀଟିର ସମ୍ଭାବ୍ୟ ନାମ ରଖିଲେ ଇଣ୍ଡୁୟାନାଡ଼ୋନ । ଡାଇନୋସର ନାମ ଉଦ୍ଭାବନ ହେବାର ବହୁ ପୂର୍ବରୁ, ୧୮୨୪ ଖ୍ରୀ:ଅ:ରେ ଯେଉଁ ପ୍ରଥମ ଡାଇନୋସର କଙ୍କାଳ ମିଳିଥିଲା, ତା'ର ନାମକରଣ ହୋଇଥିଲା ମେଗୋଲୋସରାସ୍ ।



ଆଦିମ ଡାଇନୋସର ଇଉର୍ୟାପଟର ଶରୀରର କିଛି ଅଂଶର ଛବି । ଏହା ପ୍ରାୟ ସାଢ଼େ ବାଇଶି କୋଟି ବର୍ଷ ପୂର୍ବର । ଏହା ଆର୍ଜେଣ୍ଟିନାରୁ ମିଳିଥିଲା ।

ଏହି ପ୍ରାଣୀଟିର ପୁରା କଙ୍କାଳ ଏ ଯାବତ୍ ମିଳିନାହିଁ । କେବଳ ମିଳିଛି ତା' ଦେହର ବିଭିନ୍ନ ଟୁକୁରା ଟୁକୁରା ଅଂଶମାନ । ଆଉ ସେହିସବୁ ଅଂଶଗୁଡ଼ିକୁ ନେଇ ୧୮୩୫ ମସିହାରେ ପୂର୍ଣ୍ଣାଙ୍ଗ ଜୀବଟିର ମଡ଼େଲ ତିଆରି ହୋଇଛି । କହିବାକୁ ଗଲେ ଏହା ଗୋଟିଏ ବହୁରୂପୀର ହଜାର ଗୁଣର ଏକ ବିରାଟ ସଂସ୍କରଣ ।

ଏହାପରେ ଜୀବାଶ୍ମ ଅନୁସନ୍ଧାନୀ ବିଜ୍ଞାନୀଦଳମାନଙ୍କ ମଧ୍ୟରେ ସୃଷ୍ଟି ହେଲା ନୂଆ ଆଗ୍ରହ ଓ ଉଦ୍ଦୀପନା । ପ୍ରାକ୍-ଐତିହାସିକ ଯୁଗର ସେହି ଅତିକାୟ ପ୍ରାଣୀଟିର ଜୀବାଶ୍ମ ଖୋଜି ବାହାର କରିବା ପାଇଁ ଅଭିଯାନ ଆରମ୍ଭ ହୋଇଗଲା ।

୧୯୭୮ ଖ୍ରୀ:ଅ: ବେଳକୁ ବିଭିନ୍ନ ସ୍ଥାନରୁ ବହୁତଗୁଡ଼ିଏ ଜୀବାଶ୍ମ ସଂଗୃହୀତ ହୋଇପାରିଲା । ହାଡ଼କୁ ହାଡ଼ ଯୋଡ଼ି ଦେବାରୁ ତହିଁରୁ ପୂର୍ଣ୍ଣାଙ୍ଗ ପ୍ରାଣୀଟିଏ ମିଳିଗଲା । ଏହାପରେ ବିଜ୍ଞାନୀଦଳ ବିଭିନ୍ନ ପ୍ରକାର ହିସାବନିକାଶ ଓ ମାପଚୁପ୍ ପରେ ଏହା ଇଣ୍ଡୁୟାନାଡ଼ୋନ ଜାତିର ଡାଇନୋସର ବୋଲି ନାମକରଣ କଲେ ।

ଏହାପରେ କ୍ରମେ ଜୀବାଶ୍ମ ବିଜ୍ଞାନୀମାନେ ନାନା ପରୀକ୍ଷା ନିରୀକ୍ଷା କରି ପ୍ରାକ୍-ଐତିହାସିକ ପୃଥିବୀର ଏହି ଅଜଣା ପ୍ରାଣୀଟିର ପ୍ରକୃତ ରୂପରେଖ ସମ୍ପର୍କରେ ଏକ ପ୍ରକାର ନିଶ୍ଚିତ ସିଦ୍ଧାନ୍ତରେ ଉପନୀତ ହେଲେ । ସେମାନେ ଜାଣିବାକୁ ପାଇଲେ ଯେ ଆଜିଠାରୁ ପ୍ରାୟ ସାଢ଼େ ଛଅ କୋଟି ବର୍ଷ ପୂର୍ବରୁ ପୃଥିବୀର ସ୍ଥଳଭୂମିରେ ଭରି ରହିଥିଲା ଶ୍ୱାପଦସଂକୁଳ ଅରଣ୍ୟାନୀ । ସେହି ସମୟରେ ଭୂପୃଷ୍ଠ ଉପରେ ଘୂରିବୁଲୁଥିଲେ ବିରାଟ ଆକୃତିର କିମ୍ଭୁତକିମାକାର କେତେକ ପ୍ରାଣୀ । ଏମାନଙ୍କର ଲମ୍ବ



ପ୍ରକୃତ କଙ୍କାଳରୁ ତିଆରି ଏଣ୍ଡୁୟାନୋଡ଼ନର ମଡ଼େଲ । ଏହିପରି ଭାବରେ କଙ୍କାଳଠାରୁ ମୂଳ ପ୍ରାଣୀଟିର ସମ୍ଭାବ୍ୟ ଆକୃତି ତିଆରି କରାଯାଏ । ହାଡ଼ର ଆକୃତି ଓ ଆୟତନ ପରୀକ୍ଷା କରି ବିଜ୍ଞାନୀମାନେ ବୁଝିପାରନ୍ତି- କେଉଁଠି ମାଂସପେଶୀର ବନ୍ଧନ ଥିଲା । ସେହିପରି ଭାବରେ ଶିଳ୍ପୀମାନଙ୍କୁ ମଡ଼େଲ ତିଆରି କରିବାକୁ ନିର୍ଦ୍ଦେଶ ଦେଇଥାନ୍ତି ।

ମୁଣ୍ଡଠାରୁ ଲାଞ୍ଜ ପର୍ଯ୍ୟନ୍ତ ପ୍ରାୟ ଦେଢ଼ଶ ଫୁଟ ଏବଂ ଓଜନ ନବେ ଟନ୍ ପର୍ଯ୍ୟନ୍ତ ଥିଲା । ସମ୍ଭବତଃ ସେମାନଙ୍କ ମଧ୍ୟରୁ କେତେକ ଥିଲେ ନିରାମିଷାଶୀ ଏବଂ ଆଉ କେତେକ ଥିଲେ ମାଂସାଶୀ ।

ଏବେ ସେହି ଅତିକାୟ ପ୍ରାଣୀମାନଙ୍କର ଏକତ୍ର ଗୋଟିଏ ନାମକରଣ ହୋଇଛି 'ଡାଇନୋସର' । ୧୮୪୧ ଖ୍ରୀ:ଅ:ରେ ଦ୍ୱିପଦ ବିଶିଷ୍ଟ ଏକ ବିଶାଳ ଆକାରର ମାଂସାଶୀ ଜୀବାଶ୍ମ ଆବିଷ୍କୃତ ହୋଇଥିଲା । ବ୍ରିଟିଶ ବିଜ୍ଞାନୀ ରିଚାର୍ଡ଼ ଓୟେନ ଏହି ଅତିକାୟ ରାକ୍ଷସ ଆକୃତିର ପ୍ରାଣୀଟିକୁ 'ଡାଇନୋସୁରିଆ' ନାମରେ ଅଭିହିତ କଲେ । 'ଡାଇନୋସୁରିଆ' ଶବ୍ଦଟି ପରେ 'ଡାଇନୋସର'ରେ ପରିଣତ ହେଲା । ଗ୍ରୀକ୍ ଭାଷାରେ 'ଡିନୋସ୍' ଶବ୍ଦର ଅର୍ଥ ହେଲା ଭୟଙ୍କର ଏବଂ 'ସୋରସ୍'ର ଅର୍ଥ ହେଲା ସରୀସୃପ । ଏହି ଦୁଇଟି ଶବ୍ଦ ମିଳି ହେଲା 'ଡାଇନୋସର' ଅର୍ଥାତ୍ 'ଭୟଙ୍କର ସରୀସୃପ' ।

ଡାଇନୋସର ଫସିଲ ବା ଜୀବାଶ୍ମ ଅନୁସନ୍ଧାନ କାର୍ଯ୍ୟ ଅବିରତ ଚାଲୁ ରହିଲା । ପୃଥିବୀର ଉତ୍ତରମେରୁଠାରୁ ଦକ୍ଷିଣମେରୁ ପର୍ଯ୍ୟନ୍ତ, ଗୋବି ମରୁଭୂମିଠାରୁ ନିଉଜର୍ସି ପର୍ଯ୍ୟନ୍ତ ବିଭିନ୍ନ ଅଞ୍ଚଳରୁ ଏହାର ବହୁ ଜୀବାଶ୍ମର ସନ୍ଧାନ ମିଳିଲା । ଏ କ୍ଷେତ୍ରରେ ଆମେରିକାର ଏଡ୍‌ୱାର୍ଡ଼ କୋପ୍ ଓ ହଲାଣ୍ଡର ବିଲ ଓୟାକାରଙ୍କ ଅବଦାନ ବିଶେଷଭାବରେ ସ୍ୱୀକୃତ । କୋପ୍ ୧୮୭୦ରୁ ୧୮୮୦ ଖ୍ରୀ:ଅ: ମଧ୍ୟରେ ୧୩୬ଟି ନୂତନ ପ୍ରଜାତିର ଡାଇନୋସରଙ୍କର କଙ୍କାଳ ଆବିଷ୍କାର କରିଥିଲେ । ସେହିପରି ଓୟାକାର ୧୯୮୩ ଖ୍ରୀ:ଅ:ରେ ହଲାଣ୍ଡରେ ଏକ ନୂତନ ପ୍ରଜାତିର କଙ୍କାଳ ଆବିଷ୍କାର କରିଛନ୍ତି । ତାଙ୍କର ନାମାନୁସାରେ ଏ ପ୍ରକାର ଡାଇନୋସରମାନଙ୍କର ନାମକରଣ କରାହୋଇଛି, 'ବ୍ୟାରିଓନିକ୍ସ ଓୟାକାରି' ।

ଏବେ ପୃଥିବୀର ବିଭିନ୍ନ ସ୍ଥାନରେ ବହୁ ପ୍ରଜାତିର ଡାଇନୋସରମାନଙ୍କ କଙ୍କାଳ ସଂଗ୍ରହ ଅଭିଯାନ ଅବିରତ ଚାଲୁରହିଛି ଏବଂ ଫଳରେ ପ୍ରତିବର୍ଷ ତହିଁରୁ ବହୁ ନୂତନ ପ୍ରଜାତିର ସନ୍ଧାନ ମିଳିଚାଲିଛି । ତିନି ବର୍ଷ ପୂର୍ବେ ଆରବସାଗର ଉପକୂଳରେ ଏବଂ କୁମେରୁ ପ୍ରଦେଶରେ ଏବଂ ଅତି ନିକଟରେ ସାହାରା ମରୁଭୂମିର ନିଶାର ଅଞ୍ଚଳରେ ଆବିଷ୍କୃତ ଡାଇନୋସରମାନଙ୍କର କଙ୍କାଳ ଏହାର ଅନ୍ତର୍ଭୁକ୍ତ ।

କିଛି ବର୍ଷ ପୂର୍ବେ ଦକ୍ଷିଣ ଆମେରିକାର ଆର୍ଜେଣ୍ଟିନାର ଇମାଡ଼ିଗୁଲାଷ୍ଟୋ ନାମରେ ଏକ ପାର୍ବତ୍ୟାଞ୍ଚଳରୁ ବୈଜ୍ଞାନିକମାନେ କୋଟି କୋଟି ବର୍ଷର ପୁରୁଣା ଏକ କୁକୁରର ଆକୃତି ବିଶିଷ୍ଟ ଡାଇନୋସର କଙ୍କାଳ ଆବିଷ୍କାର କରିଥିଲେ । ବିଜ୍ଞାନୀଦଳ ବହୁ ପରୀକ୍ଷା ନିରୀକ୍ଷା ପରେ ସିଦ୍ଧାନ୍ତ କରିଛନ୍ତି ଯେ ୧୦ କି:ଗ୍ରା: ଓଜନର ଏହି ମାଂସାଶୀ ପ୍ରାଣୀଟି ଡାଇନୋସରମାନଙ୍କର ଆଦିମ ପୂର୍ବପୁରୁଷ ଅର୍ଥାତ୍ ଆଦିମତମ ଡାଇନୋସର । ଜୀବାଶ୍ମ ବୈଜ୍ଞାନିକମାନେ ଏମାନଙ୍କର ନାମକରଣ କରିଛନ୍ତି 'ଇଓରେପ୍ଟର' ।

## ପ୍ରାକୃତିକ ଜୁରାସିକ୍ ପାର୍କ :

ଆମେରିକାର ମନ୍ଟାନା ଆଉ ନର୍ଥ ଡାକୋଟାୟ ଅଞ୍ଚଳରୁ ଏ ପର୍ଯ୍ୟନ୍ତ ସବୁଠାରୁ ଅଧିକ ବିଭିନ୍ନ ଜାତିର ଡାଇନୋସରମାନଙ୍କର ହାଡଗୋଡ଼ ଆଦିର୍ କଂକାଳ ସଂଗୃହୀତ ହୋଇଛି ।

ବୈଜ୍ଞାନିକମାନଙ୍କର ଦୃଢ଼ ବିଶ୍ୱାସ ଯେ ଏହା ହିଁ ଥିଲା ଡାଇନୋସରମାନଙ୍କର ଆଦ୍ୟ ବାସସ୍ଥଳୀ । ଅତଏବ, ସେମାନଙ୍କ ମତରେ ମନଟାନା ହେଉଛି ପ୍ରକୃତ ପ୍ରାକୃତିକ 'ଜୁରାସିକ ପାର୍କ' ।

ସେ ଯୁଗରେ ଉତ୍ତର ଆମେରିକାର ପଶ୍ଚିମାଂଚଳରେ ଥିବା ଉତ୍ତର ମହାସାଗରଠାରୁ ମେକ୍ସିକୋ ଉପସାଗର ପର୍ଯ୍ୟନ୍ତ ଥିଲା ଏକ ଅଗଭୀର ସମୁଦ୍ର । ତାହାର ନାମ ଥିଲା କ୍ୟାନସାସ୍ ସିଙ୍ଗ୍ । ଏହି ସମୁଦ୍ରର ମଧ୍ୟଭାଗରେ ଏକ ବିସ୍ତୀର୍ଣ୍ଣ ସମତଳ ଭୂଭାଗଟିଏ ରହିଥିଲା । ଏଥିରେ ବାସ କରୁଥିଲେ ଡାଇନୋସରମାନେ । ଭୟଙ୍କର ହିଂସ୍ର ପ୍ରକୃତିର ଟିରାନୋସରାସ୍ ରେକ୍ସ ଜାତିର ପ୍ରାୟ ଏକ ଡଜନ ହେବ କଂକାଳ ଏହିସବୁ ଅଞ୍ଚଳମାନଙ୍କରୁ ଆବିଷ୍କୃତ ହୋଇଛି । ଆହୁରି ମଧ୍ୟ ପୃଥିବୀର ସବୁଠୁ ବଡ଼ ଡାଇନୋସର, ଲମ୍ବା ଗଳା ଓ ଲମ୍ବା ଲାଞ୍ଜ ବିଶିଷ୍ଟ ବ୍ରଣ୍ଟୋସରାସ୍ ବା ଓ୍ୟାପାଷ୍ଟୋସରାସ୍, କୁଲାପିଠିଆ ଷ୍ଟେଗ୍‌ସରାସ୍, ହଂସଥଣ୍ଟିଆ ସେଇୟାସରାସ୍‌ମାନଙ୍କର କଙ୍କାଳମାନ ଏହିଠାରୁ ମିଳିଛି ।

ଟିରାନୋସରାସ୍ ରେକ୍ସ ଭଳି ଅନ୍ୟ ଏକ ଜାତିର ହିଂସ୍ର ମାଂସାଶୀ ଡାଇନୋସରର କଙ୍କାଳ ମନଟାନା ଅଞ୍ଚଳରୁ ଆବିଷ୍କୃତ ହୋଇଛି । ଏହାର ନାମ ଭେଲସିର୍‌ୟାପଟର । ଏହାର ଆକୃତି ଅପେକ୍ଷାକୃତ କ୍ଷୁଦ୍ର । ଦେହର ଲମ୍ବ ମାତ୍ର ୪ ମିଟର । ଏମାନେ ଦଳବାନ୍ଧି ବଡ଼ ବଡ଼ ଡାଇନୋସରମାନଙ୍କୁ ଶିକାର କରୁଥିଲେ ।

ଉତ୍ତର ଆମେରିକାର ପଶ୍ଚିମ ଅଞ୍ଚଳକୁ ବାଦ୍‌ଦେଲେ ପୃଥିବୀର ଆଉ କୌଣସିଠାରେ ଏଭଳି ଏତେ ସଂଖ୍ୟାରେ ଡାଇନୋସରମାନଙ୍କର ଜୀବାଶ୍ମ ଦେଖିବାକୁ ମିଳେନାହିଁ । ସେଇଥିପାଇଁ ଏହି ଅଞ୍ଚଳକୁ କୁହାଯାଏ ପ୍ରକୃତି ତା'ର ନିଜ ହାତରେ ତିଆରି କରିଥିବା ଡାଇନୋସରମାନଙ୍କର ସଂରକ୍ଷିତ ଅରଣ୍ୟାଞ୍ଚଳ ବା ପ୍ରାକୃତିକ 'ଜୁରାସିକ୍ ପାର୍କ' ।

## ଡାଇନୋସର ଜୀବାଶ୍ମ ଆବିଷ୍କାର :

ଜୀବାଶ୍ମ ଆବିଷ୍କାରର ଇତିହାସରେ ଜ୍ୟାକ୍ ହର୍ନାରଙ୍କର ନାମ ସୁବିଖ୍ୟାତ । ମନଟାନା ବିଶ୍ୱବିଦ୍ୟାଳୟର ପରିସରରେ ଥିବା ବିରାଟ ସଂଗ୍ରହାଳୟର ସେ ଥିଲେ କ୍ୟୁରେଟର । ଏ ପର୍ଯ୍ୟନ୍ତ ତାଙ୍କ ଭଳି ଏତେ ବେଶୀ ଡାଇନୋସର ଜୀବାଶ୍ମ ଆଉ କେହି ଆବିଷ୍କାର କରିନାହାନ୍ତି । ଏହି କୃତିତ୍ୱ ପାଇଁ ତାଙ୍କୁ ମ୍ୟାକାର୍ଥାର ପୁରସ୍କାରରେ ସମ୍ମାନିତ କରାଯାଇଛି ।

ଜ୍ୟାକ୍ ହର୍ନାରଙ୍କ ଦ୍ୱାରା ଡାଇନୋସରମାନଙ୍କର ବାସସ୍ଥଳୀ ଆବିଷ୍କାର କରିବା ଏକ ଯୁଗାନ୍ତକାରୀ ଘଟଣା । ସେ ଡାଇନୋସରମାନଙ୍କର ଅଣ୍ଡାର ଜୀବାଶ୍ମ ବହୁ ସଂଖ୍ୟାରେ ମଧ୍ୟ ଆବିଷ୍କାର କରିଛନ୍ତି । ମନଟାନା ପାହାଡ଼ର ଏହି ଅଞ୍ଚଳଟି ବର୍ତ୍ତମାନ 'ଏଗ୍ ମାଉଣ୍ଟେନ' ବା 'ଅଣ୍ଡାର ପାହାଡ଼' ନାମରେ ବିଖ୍ୟାତ ।

ହର୍ନାର ସାହେବ ଅସଲ ଜୁରାସିକ୍ ପାର୍କ ମନଟାନା ପାହାଡ଼ର ପଥର ସନ୍ଧିରେ ଜମା ହୋଇରହିଥିବା ବହୁ ଡାଇନୋସରମାନଙ୍କ କଙ୍କାଳ ଏବଂ ଅଣ୍ଡାଖୋଳମାନ ଖୋଜି ବାହାର କରିଛନ୍ତି । ଏହାର ଠିକ୍ ନିକଟରୁ ସେମାନଙ୍କ ନିବାସସ୍ଥଳ ଏବଂ ସେମାନେ ଖାଇଥିବା ଖଣ୍ଡିଆ ଫଳମୂଳର



ଡାଇନୋସରମାନଙ୍କର ବାସସ୍ଥଳୀ ଓ ଅଣ୍ଡା ଆବିଷ୍କାର କରିବା ଏକ ଯୁଗାନ୍ତକାରୀ ଘଟଣା । ଛବିରେ ଦେଖାଯାଇଛି ଜଣେ ଜୀବାଶ୍ମ ସନ୍ଧାନୀ ପ୍ରୋଟୋସିରେଟପର ବାସସ୍ଥାନ ଖୋଳିଯାଉଛନ୍ତି । ତାଙ୍କ ସାମନାରେ ପଥର ପାଲଟିଯାଇଥିବା ଅଣ୍ଡାର ଜୀବାଶ୍ମ । ପାଖରେ ଦେଖାହୋଇଛି ପ୍ରୋଟୋସେରେଟପର କଙ୍କାଳ ।

ଜୀବାଶ୍ମର ସନ୍ଧାନ ମଧ୍ୟ ମିଳିଛି । ଏମାନଙ୍କ ମଧ୍ୟରୁ ଅନେକ ଥିଲେ ହଂସ ଭଳି ଛୋଟ ଆକୃତିର ଜୀବ । ଏମାନଙ୍କର ନାମ ରଖାଯାଇଛି - 'ସେଇୟାସରାସ୍' ବା 'ଆଦର୍ଶ ମାତା' । କାରଣ ଏମାନେ ବସାଟିଏ ନିର୍ମାଣ କରି ତାହାରି ଭିତରେ ଅଣ୍ଡା ଦେଉଥିଲେ ଏବଂ ଛୁଆର ଯତ୍ନ ନେଉଥିଲେ ବୋଲି ବୈଜ୍ଞାନିକମାନଙ୍କର ବିଶ୍ୱାସ ।

ବସା ନିକଟରେ ଖଣ୍ଡିଆ ଫଳମୂଳର ଜୀବାଶ୍ମ ଦେଖି ଅନୁମାନ କରାଯାଏ ଯେ ବୋଧହୁଏ ମାଆମାନେ ଛୁଆମାନଙ୍କ ପାଇଁ ଖାଦ୍ୟ ସଂଗ୍ରହ କରି ଆଣୁଥିଲେ ଏବଂ ତାହା ସେମାନଙ୍କୁ ଖୁଆଉଥିଲେ । ଏହି ଅଞ୍ଚଳରୁ ଆବିଷ୍କୃତ ଡାଇନୋସରମାନଙ୍କ ଅସଂଖ୍ୟ ବାସସ୍ଥଳୀ ବା ବସାମାନଙ୍କ ମଧ୍ୟରେ ବ୍ୟବଧାନ ଥିଲା ଛଅମିଟର ପାଖାପାଖି । ତହିଁରୁ ମନେହୁଏ ଯେ ସେଇୟାସରାସ୍ ଡାଇନୋସରମାନେ ପେଙ୍ଗୁଇନ୍‌ମାନଙ୍କ ଭଳି ଦଳବାନ୍ଧି ଏକାଠି ରହୁଥିଲେ । ଅତଏବ, ଏସବୁ ବିଚାରକୁ ନେଲେ ସ୍ପଷ୍ଟ ମନେହୁଏ ଯେ ସମ୍ଭବତଃ ଅନ୍ୟ ସରୀସୃପଙ୍କଠାରୁ ଏମାନେ ଅଧିକ ବୁଦ୍ଧିମାନ ଥିଲେ ।

ବିଗତମାତ୍ର ୪୦ ଲକ୍ଷ ବର୍ଷ ହେଲା ମନୁଷ୍ୟ ପୃଥିବୀରେ ଶାସନ କରୁଛି । କିନ୍ତୁ ବୈଜ୍ଞାନିକମାନଙ୍କ ମତରେ ମନଟାନା ଅଞ୍ଚଳର ପ୍ରକୃତି 'ଜୁରାସିକ୍ ପାର୍କ'ର ଡାଇନୋସରମାନେ ପ୍ରାୟ ୧୬ କୋଟି ବର୍ଷ ଧରି ପୃଥିବୀରେ ରାଜତ୍ୱ କରୁଥିଲେ ।

## ପୃଥିବୀରେ ଡାଇନୋସରମାନଙ୍କ ରାଜତ୍ୱ :

ମନଟାନା ଅଞ୍ଚଳକୁ ବାଦଦେଲେ ଅନ୍ୟାନ୍ୟ ବହୁ ଅଞ୍ଚଳରୁ ମଧ୍ୟ ଡାଇନୋସରମାନଙ୍କର ଜୀବାଶ୍ମ ମିଳିଛି । ଆଫ୍ରିକାର ପୂର୍ବାଞ୍ଚଳ, ଗୋବି ମରୁଭୂମି, ଚୀନର ବିଭିନ୍ନ ଅଞ୍ଚଳ ପ୍ରଧାନ ପ୍ରଧାନ ଡାଇନୋସରଙ୍କ ଜୀବାଶ୍ମ ଆବିଷ୍କାର ପାଇଁ ବିଖ୍ୟାତ ହେଲେ ମଧ୍ୟ ପୃଥିବୀର ଅନ୍ୟ କୌଣସି ଅଞ୍ଚଳ ଏଥିରୁ ବାଦ୍ ପଡ଼ିନାହିଁ । ସଂଗୃହୀତ ସମସ୍ତ କଙ୍କାଳ ଓ ହାଡ଼ଗୋଡ଼କୁ ବିଶ୍ଳେଷଣ କରି ଏ ପର୍ଯ୍ୟନ୍ତ ବୈଜ୍ଞାନିକମାନେ

ପ୍ରାୟ ତିନିଶହ ପ୍ରକାରର ଡାଇନୋସରଙ୍କ ନାମକରଣ କରିପାରିଛନ୍ତି । ତନ୍ମଧ୍ୟରୁ କେତୋଟି ସମ୍ପର୍କରେ ନିମ୍ନରେ ସୂଚୀତ କରାଗଲା-

ଆଜକୁ ପ୍ରାୟ ୨୨ କୋଟି ବର୍ଷ ପୂର୍ବେ ନଅ ଫୁଟ୍ ଲମ୍ବ ବିଶିଷ୍ଟ ଡାଇନୋସରକୁ ହେରେରାସରାସ୍ ନାମରେ ଏବଂ ଆର୍ଜେଣ୍ଟିନାରୁ ମିଳିଥିବା ମାତ୍ର ୧ ଫୁଟ୍ ଲମ୍ବର ଡାଇନୋସରକୁ ଲ୍ୟାଗୋସରାସ୍ ନାମରେ ନାମିତ କରାଯାଇଛି । ସେହପରି ପ୍ରାୟ ସାଢ଼େ ପନ୍ଦର କୋଟି ବର୍ଷ ପୂର୍ବେ ମେକ୍ସିକୋ ଅଞ୍ଚଳରେ ଘୂରି ବୁଲୁଥିବା ଦେଢ଼ଶହ ଫୁଟ୍ ଲମ୍ବ ଓ ନବେ ଟନ୍ ଓଜନର ଏକ ଜାତିର ଡାଇନୋସରମାନଙ୍କର ନାମ ଦିଆଯାଇଛି ସିସମୋରାସ୍ ।



ଡାଇନୋସରମାନଙ୍କ ମଧ୍ୟରେ ସବୁଠାରୁ ଦ୍ରୁତଗାମୀ ଥିଲା ସ୍ମିଥ୍ ଓ ମିମାସ । ଏମାନଙ୍କ ଆବିର୍ଭାବ ହୋଇଥିଲା ଜୁରାସିକଯୁଗର ଶେଷ ଭାଗରେ । ଆଧୁନିକ ଯୁଗର ଓଟପକ୍ଷୀଭଳି ଏମାନଙ୍କ ଆକୃତି ଥିଲା । କେବଳ ବ୍ୟତିକ୍ରମ ଥିଲା ଗୋଟିଏ ଦୀର୍ଘ ଲାଞ୍ଜ । ସ୍ମିଥ୍ ଓ ମିମାସର ଦୁଇଟି ପାଦ ଦୀର୍ଘ ଓ ଶକ୍ତ ଥିଲା । ପାଦରେ ତିନିଟି ଲେଖା ଖୁରା ଥିଲା । ପ୍ରାୟ ଘଣ୍ଟାରେ ପଚାଶ କି.ମି. ରାସ୍ତା ସେମାନେ ଅତିକ୍ରମ କରିପାରୁଥିଲେ । ଘୋଡ଼ା ବା ଓଟପକ୍ଷୀ ଭଳି ଚାଲୁଥିଲେ । ଏମାନଙ୍କର ଖାଦ୍ୟ ଥିଲା ଗଛର କଅଁଳିଆ ପତ୍ର ଓ ନାନା ପ୍ରକାରର ଶସ୍ୟ ଦାନା । ଛୋଟ ଛୋଟ ପ୍ରାଣୀ ଓ କୀଟପତଙ୍ଗମାନଙ୍କୁ ମଧ୍ୟ ଭକ୍ଷଣ କରୁଥିଲେ । ରାକ୍ଷସ ଡାଇନୋସର ଟିରାନୋସରରାସର କବଳରୁ ଆତ୍ମରକ୍ଷା ପାଇଁ ଖୁବ୍ ବେଗରେ ଦଉଡ଼ିପାରୁଥିଲେ ।

୧୫ କୋଟି ବର୍ଷ ପୂର୍ବେ ଦକ୍ଷିଣ ଆଫ୍ରିକାର ବଣ ଅଞ୍ଚଳରେ ଯେଉଁ ବ୍ରନ୍‌ଟୋସରାସ୍ ନାମରେ ନାମିତ ଡାଇନୋସର ଘୂରି ବୁଲୁଥିଲେ ତା'ର ଲମ୍ବ ଥିଲା ଶହେ ଫୁଟ ଏବଂ ଓଜନ ଥିଲା ତିରିଶ ଟନ୍।

ଏସିଆ ମାଟିରେ ନ' କୋଟି ବର୍ଷପୂର୍ବରୁ ବାସ କରୁଥିବା ଡ଼ାଇନୋସର ଲମ୍ବ ଥିଲା ୨୭ ଫୁଟ୍ ଓ ଓଜନ ଥିଲା ୨୦ ହଜାର ପାଉଣ୍ଡ। ଏମାନଙ୍କ ନାମ ରଖାଯାଇଛି ସୋରାଟୋପସିୟାନସ୍।

ମଧ୍ୟ-ଏସିଆ ଏବଂ ଇଉରୋପରେ ସାଢ଼େ ସାତ କୋଟି ବର୍ଷ ପୂର୍ବେ ବିଚରଣ କରୁଥିବା ଡାଇନୋସରର ହଂସ ଭଳି ଥଣ୍ଟ ଥିଲା। ତାକୁ ହାଇଡ୍ରୋସରାସ୍ କୁହାଯାଉଛି। ତା'ର ଲମ୍ବ ଥିଲା ୨୦-୫୦ ଫୁଟ୍ ପର୍ଯ୍ୟନ୍ତ।

ପୂର୍ବ-ଏସିଆ ଏବଂ କାନାଡ଼ାର ତୃଣଭୂମି ଅଞ୍ଚଳରେ ସାଢ଼େ ଛଅ କୋଟି ବର୍ଷ ପୂର୍ବରୁ ଦେଖାଯାଇଥିବା ୫୦ ଫୁଟ୍ ଲମ୍ବ ବିଶିଷ୍ଟ ଡାଇନୋସରର ନାମ ହେଉଛି ଟିରାନୋସରାସ୍ ରେକ୍ସ। ଆଠ ଇଞ୍ଚ ଲମ୍ବ, ତୀକ୍ଷ୍ଣ ଧାରୁଆଦାନ୍ତ ହେଲା ଏମାନଙ୍କର ବୈଶିଷ୍ଟ୍ୟ। ଏମାନେ ଖୁବ୍ ହିଂସ୍ର



ଆଉ ଏକ ପ୍ରଜାତିର ଡାକବିଲ ଡାଇନୋସର ହେଲା କରିଥୋସରାସ ମଥା ଉପରେ ଚୁଟିଥିବା ଯୋଗୁ ଏହାର ନାମ 'ଡାକବିଲ'। ଏମାନେ ହଂସ ଭଳି ଉଡିପାରନ୍ତି ନାହିଁ କି ଶୀଘ୍ର ଦଉଡିପାରିନ୍ତି ନାହିଁ। ଏମାନଙ୍କର ଶରୀରର ଆଗ ଗୋଡ଼ ଦୁଇଟି ଆକୃତିରେ ଛୋଟ। ଚଲାବୁଲା କରିବା ସମୟରେ ଶରୀରର ଭାରସାମ୍ୟ ରକ୍ଷା କରିଥାଏ ଦୀର୍ଘ ଲାଞ୍ଜଟି। ସାଧାରଣତଃ ଏମାନେ ଚାରି ପାଦରେ ଚାଲିପାରନ୍ତି। ଛୋଟ ଗଛର ଫଳପତ୍ର ଖାଇବା ସମୟରେ ଅଥବା ଶତ୍ରୁକୁ ନଜର କରିବା ସମୟରେ ପଛ ଗୋଡ଼ ଦୁଇଟିରେ ଭାରସାମ୍ୟ ରକ୍ଷାକରି ଛିଡ଼ାହୋଇପାରନ୍ତି।

ସ୍ୱଭାବର ଥିଲେ । ଆଜି ପର୍ଯ୍ୟନ୍ତ ପୃଥିବୀରେ ଯେତେ ମାଂସାଶୀ ପ୍ରାଣୀ ଜନ୍ମ ହୋଇଛନ୍ତି, ସେମାନଙ୍କ ମଧ୍ୟରୁ ଏଗୁଡ଼ିକ ହେଲେ ସର୍ବବୃହତ୍ ।

କିଛି ବର୍ଷ ତଳେ ଜର୍ମାନୀରେ ପଥର ଭାଙ୍ଗୁଥିବା ଶ୍ରମିକମାନେ ବହୁରୂପୀ ଆକୃତିର ଗୋଟିଏ ପ୍ରାଣୀର ଜୀବାଶ୍ମର ସନ୍ଧାନ ପାଇଥିଲେ । ସେଥିସହିତ ସେମାନଙ୍କୁ ମିଳିଲା କେତୋଟି ଡେଣା । ପ୍ରାଣୀଟିର ଆକୃତି ଯେପରି ସରୀସୃପ ଓ ପକ୍ଷୀର ସମ୍ମିଶ୍ରଣରେ ତିଆରି ହୋଇଛି । କିଭଳି ଭାବରେ ଏକ ସମୟରେ ଡାଇନୋସର ସହିତ ପକ୍ଷୀଟିର ବିବର୍ତ୍ତନ ହୋଇଛି ଏହି ବହୁରୂପୀ ପକ୍ଷୀଟିର କଙ୍କାଳ ହେଉଛି ତା'ର ନମୁନା । ବିଜ୍ଞାନୀମାନେ ଏହାକୁ 'ମିସିଂ ଲିଙ୍କ୍' ରୂପେ ବିଚାର କରୁଛନ୍ତି । ପକ୍ଷୀମାନଙ୍କର ଆଦିପୁରୁଷ ଏହି ଡାଇନୋସର ନାମ ଦିଆଯାଇଛି ଆର୍କିଅପ ଟେରିକ୍ସ ।

ଏଥିରୁ ଜଣାଯାଉଛି ଯେ ଉତ୍ତର ଆମେରିକାର ପଶ୍ଚିମାଞ୍ଚଳର ପ୍ରକୃତ 'ଜୁରାସିକ୍ ପାର୍କ' ବ୍ୟତୀତ ସାରା ପୃଥିବୀର ବିଭିନ୍ନ ଅଞ୍ଚଳରେ ମଧ୍ୟ ନାନା ଜାତିର ଡାଇନୋସରମାନେ ଘୂରି ବୁଲୁଥିଲେ ।



କମପ୍ସୋଗନ୍ୟାଥାସ ସବୁଠୁ ଛୋଟ ମାଂସାଶୀ ଡାଇନୋସର । ବିଗତ ଶତାବ୍ଦୀର ଦକ୍ଷିଣ ଜର୍ମାନୀରୁ ଏହିଭଳି ଗୋଟିଏ ପୂର୍ଣ୍ଣ ବୟସ୍କ ଡାଇନୋସରର କଙ୍କାଳ ମିଳିଥିଲା । ଲାଞ୍ଜ ସହିତ ଏହାର ଶରୀରର ଦୈର୍ଘ୍ୟ ମାତ୍ର ସତୁରୀ ସେ.ମି. । ଏହାର ଶରୀରର ଅଧିକ ଅଂଶ ଥିଲା ଲାଞ୍ଜ ।

ଜୀବଜଗତର ବିବର୍ତ୍ତନର ମୂଳକାରଣ ହେଲା ଜୀବକୋଷରେ ଥିବା ଜିନ୍ ନାମକ ପଦାର୍ଥରେ ଆସୁଥିବା ପରିବର୍ତ୍ତନ । ଏହାକୁ କହନ୍ତି 'ମ୍ୟୁଟେସନ୍' । ବିଭିନ୍ନ ପ୍ରାକୃତିକ କାରଣରୁ ଏହା ସଂଘଟିତ ହୋଇଛି ଏବଂ ଏହାରି ମାଧ୍ୟମରେ ଜୀବ ନିଜକୁ ପରିବର୍ତ୍ତନଶୀଳ ପରିବେଶ ସହିତ ଖାପଖୁଆଇ ଆସିଛି । ଏହି ପରିବର୍ତ୍ତନ ଅଧିକ ହୋଇଗଲେ ନୂତନ ପ୍ରଜାତିର ଉଦ୍ଭବ ଘଟେ । ଏହାରି ଫଳରେ ପୃଥିବୀର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ଡାଇନୋସରମାନେ ସୃଷ୍ଟି ହୋଇଥିଲେ । ଏହି ବିବର୍ତ୍ତନ ପ୍ରକ୍ରିୟାକୁ ବୈଜ୍ଞାନିକମାନେ ଭଲ ଭାବରେ ଅଧ୍ୟୟନ କରୁଛନ୍ତି । ଡାଇନୋସରମାନେ କିପରି ପୃଥିବୀର ଗୋଟିଏ ସ୍ଥାନରୁ ବିଭିନ୍ନ ସ୍ଥାନକୁ ବିଚ୍ଛେଇ ହୋଇଗଲେ ଏବଂ କିପରି ଭାବରେ ସେମାନଙ୍କର ଆକୃତି ଓ ପ୍ରକୃତିଗତ ବୈଷମ୍ୟ ସଂଘଟିତ ହେଲା, ତାହା ଏଥିରୁ ଜଣାପଡୁଛି ।



ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଡାଇନୋସରର ଅଣ୍ଡା ଆବିଷ୍କୃତ ହୋଇଛି । ଡାଇନୋସରମାନେ ଶାବକ ପ୍ରସବ କରନ୍ତି ନାହିଁ । ଅଣ୍ଡାରୁ ହିଁ ଶିଶୁ ଡାଇନୋସର ଜନ୍ମ ନେଇଥାନ୍ତି । ମେଇୟାସରମାନଙ୍କର ଆବିଷ୍କୃତ ବାସସ୍ଥାନ, ଅଣ୍ଡାର ଖୋଳପା ଓ ତା'ର ସଂଲଗ୍ନ କିଛି ଭଙ୍ଗା ଫଳମୂଳ ଅଂଶଗୁଡ଼ିକର ସେହି ବାସସ୍ଥାନ ନିକଟରେ ଦେଖିବାକୁ ମିଳିଛି । ସେଥିରୁ ଜଣାପଡ଼ିଛି ଯେ, ମା' ଡାଇନୋସରମାନେ ତାଙ୍କର ପିଲାମାନଙ୍କ ନିକଟରେ କିଛିଦିନ ଅତିବାହିତ କରୁଥିଲେ ।

ବୈଜ୍ଞାନିକମାନଙ୍କ ମତରେ ଆଜିଠାରୁ ପ୍ରାୟ ସାଢ଼େ ୨୨ କୋଟି ବର୍ଷ ପୂର୍ବେ ଡାଇନୋସରମାନଙ୍କର ବିବର୍ତ୍ତନ ଆରମ୍ଭ ହୋଇଥିଲା । ସେହି ସମୟର ପୃଥିବୀ ଗୋଟିଏ ମାତ୍ର ବିଶାଳ ଭୂଖଣ୍ଡରେ ଗଠିତ ଥିଲା । ତାହାକୁ କୁହାଯାଉଛି ପ୍ୟାଙ୍ଗୋୟାର ମହାଦେଶ । ଆଜିଠାରୁ ପ୍ରାୟ ୧୦ କୋଟି ୭୦ ଲକ୍ଷ ବର୍ଷ ପୂର୍ବେ ଅର୍ଥାତ୍ 'ଜୁରାସିକ୍‌ଯୁଗ'ରେ ପୃଥିବୀପୃଷ୍ଠରେ ଡାଇନୋସରମାନଙ୍କର ରାଜତ୍ୱ ଚାଲିଥିବା ସମୟରେ ଏହି ପ୍ୟାଙ୍ଗୋୟାର ମହାଦେଶ ଭାଙ୍ଗିଯାଇ ଦୁଇଖଣ୍ଡ ହେବାକୁ ଆରମ୍ଭ କଲା । ଏହାର ଉତ୍ତରାଞ୍ଚଳଟିର ନାମ ହେଲା ଲରେସିଆ, ଯାହାକି ପରେ ଉତ୍ତର ଆମେରିକା, ଇଉରୋପ ଓ ଏସିଆ କେତେକ ଅଞ୍ଚଳରେ ପରିଣତ ହେଲା ।

ସେହିପରି ଦକ୍ଷିଣାଞ୍ଚଳଟିର ନାମ ହେଲା ଗଣ୍ଡୋୟାନାଲେଣ୍ଡ । ଏହି ଅଂଶ ଏବେ ଦକ୍ଷିଣ ଆମେରିକା, ଆଫ୍ରିକା, ଭାରତ, ଆଣ୍ଟାର୍କଟିକା ଏବଂ ଅଷ୍ଟ୍ରେଲିଆରେ ପରିଣତ ହୋଇଛି । ପ୍ୟାଙ୍ଗୋୟାର ଏହି ବିଭାଜନଟି ଅବଶ୍ୟ ହଠାତ୍ ଏକାଦିନକେ ହୋଇନାହିଁ । ତାହା ଖୁବ୍ ଧୀରେ ଧୀରେ ହୋଇଛି ଏବଂ ସେତେବେଳେ ଏଥିରେ ଡାଇନୋସରମାନେ ବସବାସ କରୁଥିଲେ । ଅତଏବ ଏହି ବିଭାଜନ ଫଳରେ ଡାଇନୋସରମାନଙ୍କ ପରିବାର ମଧ ପୃଥିବୀରେ ଦୁଇଭାଗ ହୋଇଗଲା । ଫଳରେ ସେମାନେ ଆଉ ପରସ୍ପର ସମ୍ପର୍କରେ ଆସିପାରିଲେ ନାହିଁ । ଏହିପରି ଭାବରେ କ୍ରମେ ଭିନ୍ନ ଭିନ୍ନ ଜାତିର ଡାଇନୋସରମାନେ ବିଭିନ୍ନ ମହାଦେଶରେ ବାସ କଲେ ଏବଂ ପରସ୍ପରଠାରୁ ବିଚ୍ଛିନ୍ନ ହୋଇପଡ଼ିଲେ ।

## ଡାଇନୋସରମାନଙ୍କ ବିଲୟ :

ଜୀବାଶ୍ମ ବିଜ୍ଞାନୀମାନଙ୍କ ମତରେ ଅତିକମ୍‌ରେ ପଚିଶକୋଟି ବର୍ଷ ପୂର୍ବେ ପୃଥିବୀପୃଷ୍ଠରେ ସରୀସୃପ ସମ୍ରାଟ ଡାଇନୋସରମାନଙ୍କର ଆବିର୍ଭାବ ହୋଇଥିଲା । ତାହା ଥିଲା ଟ୍ରାୟାସିକ୍ ଯୁଗ । ଏହା ପରଠାରୁ ମୋଟ ଅଠର କୋଟି ବର୍ଷ ପର୍ଯ୍ୟନ୍ତ ଏମାନେ ପୃଥିବୀରେ ତିଷ୍ଠି ରହିଥିଲେ । ତା' ମଧରେ ବିତିଯାଇଥିଲା ଏକ ସମ୍ପୂର୍ଣ୍ଣଯୁଗ - 'ଜୁରାସିକ୍‌ଯୁଗ' । ଏ ଯୁଗର ସମୟକାଳ ଥିଲା ଆଜିଠାରୁ ସାଢ଼େ ୨୧ରୁ ସାଢ଼େ ୧୪ କୋଟି ବର୍ଷ ପର୍ଯ୍ୟନ୍ତ ।

ଏହାପରେ ଆରମ୍ଭ ହେଲା କ୍ରିଟୋସିୟସ୍ ଯୁଗ । ଆଜିଠାରୁ ସାଢ଼େ ଛ' କୋଟି ବର୍ଷ ମଧରେ ବିସ୍ତୃତ ଏହି ଯୁଗର ମୋଟ ଆଠ କୋଟି ବର୍ଷ ଥିଲା ଡାଇନୋସରମାନଙ୍କର ସୁବର୍ଣ୍ଣଯୁଗ । ତପ୍ରେ ଅକସ୍ମାତ୍ ଡାଇନୋସରମାନେ ବିଲୟ ହେବାକୁ ଲାଗିଲେ ।

ପୃଥିବୀ ଇତିହାସରେ ବିଲୟ ପ୍ରକ୍ରିୟା ଏକ ନୂଆ ଘଟଣା ନୁହେଁ । ବିଗତ ସାଢ଼େ ୬୦ କୋଟି ବର୍ଷ ମଧରେ ପୃଥିବୀରେ ଅନ୍ତତଃ ପାଞ୍ଚ ପାଞ୍ଚ ଥର ବଡ଼ ଧରଣର ପ୍ରଳୟକାଣ୍ଡ ଘଟିଯାଇଛି ଏବଂ ପରିଣାମରେ ବହୁ ସଜୀବ ଜାତି ବିଲୁପ୍ତ ହୋଇଯାଇଛନ୍ତି । ତନ୍ମଧରୁ ନିମ୍ନୋକ୍ତ ତିନିଟି ହେଉଛି ପୃଥିବୀ ଇତିହାସରେ ବିଶେଷଭାବରେ ଉଲ୍ଲେଖନୀୟ ଘଟଣା ।



କାରବନିଫରାସ ଯୁଗ - ୨୮ କୋଟିରୁ ୩୪ କୋଟି ୫୦ ଲକ୍ଷ ବର୍ଷ ପୂର୍ବେ ।



ଇୟୋସିନ୍ ଯୁଗ - ୧୦ ଲକ୍ଷ ବର୍ଷଠାରୁ ୫ କୋଟି ୪୦ ଲକ୍ଷ ବର୍ଷ ପୂର୍ବେ ।



କେୟୋରଟାରନାରି ଯୁଗ - ୧୦ ଲକ୍ଷ ବର୍ଷ ପୂର୍ବେ ।

ଆଲଫ୍ରେଡ ଓୟେଗନାର ତତ୍ତ୍ୱର ଭିତ୍ତିରେ ଭୂତାତ୍ତ୍ୱିକ ଇତିହାସର ଚିହ୍ନ । ଗୋଟିଏ ବିଶାଳ ଆକୃତିର ମହାଦେଶ ଭାଙ୍ଗି କାଳକ୍ରମେ ସାତଟି ମହାଦେଶ ସୃଷ୍ଟି ହୋଇଛି ।



ନିଉ ମେକ୍ସିକୋଠାରୁ ହଂସଚଞ୍ଚୁ ଡାଇନୋସର କୋୟେଲୋପାଇସିସ୍‌ମାନଙ୍କର ଗୋଟିଏ ଉନ୍ମୁକ୍ତ କବର ଆବିଷ୍କୃତ ହୋଇଛି । ସେହିଠାରୁ ଅଂସଖ୍ୟ କଙ୍କାଳ ମିଳିଛି । ଯେଉଁଥିରୁ ବିଜ୍ଞାନୀମାନେ ଅନୁମାନ କରିଛନ୍ତି ଯେ ଏମାନେ ଦଳ ବାନ୍ଧି ଏକାଠି ରହିବାକୁ ପସନ୍ଦ କରୁଥିଲେ । ଚିତ୍ରରେ ଏଠାରୁ ମିଳିଥିବା ସମୂହ କଙ୍କାଳର ଗନ୍ତାଘର ।

ବୈଜ୍ଞାନିକମାନେ ପ୍ରମାଣ ପାଇଛନ୍ତି ଯେ ଆଜକୁ ପ୍ରାୟ ୫୫ କୋଟି ବର୍ଷ ପୂର୍ବରୁ କ୍ୟାମବ୍ରିୟାନ ଯୁଗରେ ଥରେ ପ୍ରଳୟ ଘଟିଥିଲା । ତା' ଫଳରେ ସମୁଦ୍ରର ସବୁଠାରୁ କ୍ଷମତାଶୀଳ ଟ୍ରିଲୋବାଇଟ୍ ଶ୍ରେଣୀର ଜୀବମାନେ ନିଶ୍ଚିହ୍ନ ହୋଇଗଲେ । ଏହା ପରେ ପ୍ରାୟ ପଚିଶକୋଟି ବର୍ଷ ପୂର୍ବେ ପାରମିୟାନ ଯୁଗରେ ଦ୍ୱିତୀୟ ବିପର୍ଯ୍ୟୟ ଘଟିଥିଲା । ଯାହାକି ପୃଥିବୀର ପ୍ରାୟ ନବେ ଶତାଂଶ ପ୍ରାଣୀଙ୍କର ପରିସମାପ୍ତି ଘଟାଇଥିଲା ।

ତୃତୀୟ ପ୍ରଳୟଙ୍କରୀ ଘଟଣାଟି କ୍ରିଟୋସିୟସ୍ ଏବଂ ଟ୍ରାୟାସିକ୍ ଯୁଗର ସନ୍ଧିକ୍ଷଣରେ ସଂଘଟିତ ହୋଇଥିଲା । ଭୂତାତ୍ତ୍ୱିକମାନେ ଏହାର ନାମ ଦେଇଛନ୍ତି କେ-ଟି ବାଉଣ୍ଡାରୀ । ଏହି ସମୟରେ ହିଁ ଡାଇନୋସରମାନଙ୍କର ବଂଶ ସମୂଳେ ଧ୍ୱଂସ ପାଇଥିଲା ।



ପକ୍ଷୀମାନଙ୍କ ମଧ୍ୟରେ ପ୍ରଥମ ପୁରୁଷ ବା ଆଦି ପକ୍ଷୀର ଜୀବାଶ୍ମ-ଆର୍କିଅପଟେ ରିକ୍ସା ।

ଡାଇନୋସରମାନଙ୍କର ବିଲୟ ହେବା ପରେ ପୃଥିବୀରେ ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଆଧିପତ୍ୟ ବିସ୍ତାର ହେବାକୁ ଲାଗିଲା । ଅନେକ ସମୟରେ ମନରେ ପ୍ରଶ୍ନ ଉଠେ ଯେ ହଠାତ୍ କାହିଁକି ଏପରି ଡାଇନୋସରମାନେ ବିଲୟ ହୋଇଗଲେ ?



କ୍ରିଟୋସିୟାସ ଯୁଗ ଶେଷ ହୋଇଯିବା ସଂଗେ ସଂଗେ ଡାଇନୋସରମାନଙ୍କର ମଧ୍ୟ ଅନ୍ତିମ ସମୟ ଘନେଇ ଆସିଲା । ସେମାନଙ୍କର ବିଲୟ ଘଟିଲା ପୃଥିବୀ ବକ୍ଷରୁ ।

ଏହାର ଉତ୍ତର ପାଇବା ପାଇଁ ବିଜ୍ଞାନୀମାନେ ଦେଢ଼ଶହ ବର୍ଷ ହେଲା ଗବେଷଣା କରିଆସୁଛନ୍ତି । ଫଳରେ ସେଥିସମ୍ପର୍କୀୟ ବହୁ ତଥ୍ୟ ଲୋକଲୋଚନକୁ ଆସିଛି ଏବଂ ତାହାକୁ ଭିତ୍ତି କରି ଗଢ଼ି ଉଠିଛି ବହୁ ମତବାଦ । ତନ୍ମଧ୍ୟରୁ ସର୍ବାଧୁନିକ ତଥା ବହୁଳ ଭାବେ ଗ୍ରହଣୀୟ ମତବାଦ ଅନୁସାରେ ସେ ସମୟରେ ପୃଥିବୀପୃଷ୍ଠରେ ଏକ ଧୂମକେତୁ, ଗ୍ରହାଣୁ କିମ୍ବା ଉଲ୍କାର ଆକସ୍ମିକ ପତନ ଘଟିଥିଲା । ଫଳରେ ସୃଷ୍ଟି ହେଲା ଏକ ଧୂଳିର ମେଘ । ଏହା ଭୂପୃଷ୍ଠରେ ସୌରରଶ୍ମିକୁ ପତିତ ହେବାକୁ ଦେଲା ନାହିଁ । ଏଣୁ ଜଳବାୟୁରେ ଶୀତଳତା ବୃଦ୍ଧି ପାଇ ପରିବେଶ ବିପର୍ଯ୍ୟସ୍ତ ହୋଇଗଲା । ପରିଣାମରେ ଉଦ୍ଭିଦ ଜଗତରେ ବିରାଟ ପରିବର୍ତ୍ତନ ଘଟିଲା ଏବଂ ତତ୍‌ସଙ୍ଗେସଙ୍ଗେ ତାହା ଉପରେ ନିର୍ଭରଶୀଳ ପ୍ରାଣୀଜଗତରେ ଚରମ ବିପର୍ଯ୍ୟୟ ଘଟିବାକୁ ଲାଗିଲା । ଅତଏବ ପ୍ରତିକୂଳ ଜଳବାୟୁ ଓ ଖାଦ୍ୟାଭାବ ହେତୁ ଧରାପୃଷ୍ଠରୁ ଡାଇନୋସରମାନେ ବିଲୋପ ହୋଇଗଲେ ।

●

# ଦ୍ୱିତୀୟ ଅଧ୍ୟାୟ

# ଚଳଚିତ୍ରର କାହାଣୀରେ ଜୁରାସିକ୍ ପାର୍କ

ସ୍ପିଲ୍‌ବର୍ଗ୍‌ଙ୍କ ସୁପ୍ରସିଦ୍ଧ 'ଜୁରାସିକ ପାର୍କ' ଚଳଚିତ୍ର କାହାଣୀରେ ଡାଇନୋସର୍‌ମାନଙ୍କ ଦେହାବଶେଷରୁ ସଂଗୃହୀତ ଜିନୀୟ ପଦାର୍ଥରୁ ଆଧୁନିକ ଜୈବ ପ୍ରଯୁକ୍ତିବିଦ୍ୟା ପ୍ରୟୋଗ ଦ୍ୱାରା ସେହି ଭୀମକାୟ ପ୍ରାଗ୍‌ଐତିହାସିକ ଜୀବମାନଙ୍କର ସୃଷ୍ଟି ଏବଂ ସେମାନଙ୍କୁ ନେଇ ପାର୍କଟିଏ ସ୍ଥାପନ କଥା ପରିକଳ୍ପନା କରାଯାଇଛି । ଏକ ବୈଜ୍ଞାନିକ ପୃଷ୍ଠଭୂମି ଉପରେ ଏହାକୁ ଏପରି ଉପସ୍ଥାପିତ କରାଯାଇଛି ଯେ ତାହା ଦର୍ଶକ ମନକୁ କିଛିକାଳ ପାଇଁ ସେହି ଯୁଗକୁ ଟାଣି ନେବାରେ ସକ୍ଷମ ହୋଇ ପାରୁଛି । ସେହି କାହାଣୀର ଏକ ସଂକ୍ଷିପ୍ତ ସୂଚନା ଏଠାରେ ପ୍ରଦାନ କରାଗଲା ।

## ଜୁରାସିକ୍ ପାର୍କର ଯୋଜନା ପ୍ରସ୍ତୁତି :

ଜୀବାଶ୍ମ ବିଜ୍ଞାନୀମାନେ ଅନେକ ଆଗରୁ ଡାଇନୋସରମାନଙ୍କର ହାଡ଼, ଅଣ୍ଡା ଓ ବାସସ୍ଥାନ ଆବିଷ୍କାର କରିଥିଲେ । କିନ୍ତୁ ବର୍ତ୍ତମାନ ସେମାନେ ତା'ଠାରୁ ଅଧିକ ଚମକପ୍ରଦ ଓ ଆଶ୍ଚର୍ଯ୍ୟଜନକ ପଦାର୍ଥଟିଏ ଆବିଷ୍କାର କରିଛନ୍ତି । ତାହାହେଲା କେଉଁ ଏକ ପ୍ରାକ୍-ଐତିହାସିକ ବୃକ୍ଷର ଅଠା ରୂପାନ୍ତରିତ ହୋଇଥିବା ସ୍ଫଟିକ ମଧ୍ୟରେ ଗୋଟିଏ ମଶା ଜୀବାଶ୍ମର ସନ୍ଧାନ । ଏହାର ପେଟ ଭିତରେ ସଂରକ୍ଷିତ ହୋଇ ରହିଛି ଡାଇନୋସରର ରକ୍ତ । ସମ୍ଭବତଃ ଏହି ମଶାଟି ଡାଇନୋସର ରକ୍ତ ଶୋଷଣ କଲାପରେ ପାଖରେ ଥିବା କୌଣସି ଏକ ଗଛରେ ବସିଯାଇଥିଲା । ଏହାର ଅଠାରେ ମଶାର ଡେଣା ଲାଗିଯିବାରୁ ସେ ଆଉ ଉଡ଼ିପାରି ନ ଥିଲା ଏବଂ ରକ୍ତ ହଜମ ହେବା ପୂର୍ବରୁ ତା'ର ପ୍ରାଣବାୟୁ ଉଡ଼ିଯାଇଥିଲା । ତତ୍‌ପରେ ପତଙ୍ଗଟି ଡାଇନୋସରର ରକ୍ତ ସହିତ ଅଠାରେ ବୁଡିଯାଇ ଜୀବାଶ୍ମରେ ରୂପାନ୍ତରିତ ହୋଇଯାଇଥିଲା । ବିଜ୍ଞାନୀମାନେ ତାହାକୁ ଟିକିନିଖି ପରୀକ୍ଷା କରି ଏହା ସାତକୋଟି ବର୍ଷ ତଳର ଡାଇନୋସରର ରକ୍ତ ବୋଲି ଜାଣିପାରିଛନ୍ତି ।

ଏହି ରକ୍ତରେ ଥିବା ଜିନୀୟପଦାର୍ଥର ସାମାନ୍ୟ କିଛି ଅଂଶ କ୍ଷତିଗ୍ରସ୍ତ ହେଲେ ମଧ୍ୟ ବିଜ୍ଞାନୀମାନେ ଆଶାପୋଷଣ କରିଛନ୍ତି ଯେ ଅନ୍ୟ କୌଣସି ପ୍ରାଣୀର ଜିନ୍ ଦ୍ୱାରା ଏହି କ୍ଷତିପୂରଣ ସମ୍ଭବ ହୋଇପାରିବ । କେବଳ ତାହା ନୁହେଁ ଅନ୍ୟ କୌଣସି ସରୀସୃପର ଜେନମ୍ ସହିତ ଏହାକୁ ଯୋଡ଼ି ଏଥିରୁ ଡାଇନୋସରମାନଙ୍କର ସୃଷ୍ଟି ସମ୍ଭବ ହୋଇପାରିବ ।




ଆଧୁନିକ ବିଜ୍ଞାନ ଅସାଧକୁ ସାଧନ କରିବାର କ୍ଷମତା ମନୁଷ୍ୟକୁ ଦେଇପାରିଛି, ଅତଏବ ସେହି କ୍ଷମତାକୁ ପ୍ରୟୋଗ କରି କେତେକ ବୈଜ୍ଞାନିକ ଜୀବନ୍ତ ଡାଇନୋସରର ସୃଷ୍ଟି କରିବାର ପରିକଳ୍ପନା କରିବାକୁ ଲାଗିଲେ ।

ବିଶିଷ୍ଟ ଶିଳ୍ପପତି ଅଗାଧ ଧନସମ୍ପତ୍ତିର ମାଲିକ ଜନ ହାରଲ୍ଡ଼ ହେଉଛନ୍ତି ଖୁବ୍ ଖିଆଲି ଓ ସୌଖୀନ ପ୍ରକୃତିର ବ୍ୟକ୍ତି । ଖିଆଲି ପ୍ରକୃତି ଯୋଗୁଁ ନିଶ୍ଚଳରେ ବସି ଅନେକ ସମୟରେ ବ୍ୟବସାୟ ବ୍ୟତୀତ ଅନ୍ୟାନ୍ୟ କଥାରେ ମଧ ମୁଣ୍ଡ ଖେଳାନ୍ତି । ପରିକଳ୍ପନାଟି ଯେତେବେଳେ ତାଙ୍କର କର୍ଣ୍ଣଗୋଚର ହେଲା, ସେ ସେଥିପ୍ରତି ପ୍ରବଳ ଭାବେ ଆକୃଷ୍ଟ ହୋଇଗଲେ । ବ୍ୟବସାୟ କଥା ଚିନ୍ତା କରିବା ଅପେକ୍ଷା ଡାଇନୋସର ଚିନ୍ତା ତାଙ୍କ ମନକୁ ବାରମ୍ବାର ଆନ୍ଦୋଳିତ କଲା । ତାଙ୍କର ଅନ୍ୟତମ ଘନିଷ୍ଠ ବନ୍ଧୁ ଡଃ ରିଚମଣ୍ଡଙ୍କ ସହ ଏ ବିଷୟରେ ସୁବିସ୍ତୃତ ଆଲୋଚନା କରିବା ପାଇଁ ସେ ଇଚ୍ଛା କଲେ । ବନ୍ଧୁଙ୍କ ବିଜ୍ଞାନାଗାରରେ ପହଞ୍ଚିବା କ୍ଷଣି ସେ ତାକୁ ପ୍ରଥମେ ପ୍ରଶ୍ନ କଲେ - ''ରିଚମଣ୍ଡ, ଡାଇନୋସରମାନଙ୍କୁ ନେଇ ତୁମେ କ'ଣ ଚିନ୍ତା କରୁଛ ?''

ଡଃ ରିଚମଣ୍ଡ ତାଙ୍କ ସହକାରୀଙ୍କ ସହିତ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଗବେଷଣାରତ ଥିଲେ । ବନ୍ଧୁଙ୍କ କଥାଶୁଣି ପରୀକ୍ଷା ବନ୍ଦ କରି ଯନ୍ତ୍ରପାତି ସେହିଠାରେ ଥୋଇ ଉଠି ଆସିଲେ । କହିଲେ - ''କେଉଁ ସମ୍ବନ୍ଧରେ ତୁମେ ପଚାରୁଛ ?''

''ଏହି ମଶାର ପେଟରେ ମିଳିଥିବା ଡାଇନୋସରର ରକ୍ତରୁ ସଜୀବ ଡାଇନୋସର ତିଆରି ହେବା ପରିକଳ୍ପନା କଥା... ।''

ଡଃ ରିଚମଣ୍ଡ ସ୍ମିତହାସ୍ୟ ହୋଇ କହିଲେ :- "ହଁ... ହଁ... ମୁଁ କିଛିଦିନ ହେଲା ସେହି ବିଷୟରେ ଲାଗିରହିଛି ।"

"ପ୍ରକୃତରେ ତୁମେ କ'ଣ ବିଶ୍ୱାସ କର ଯେ ସାଢ଼େ ଛ' କୋଟି ବର୍ଷ ପୂର୍ବେ ବିଲୟ ଲାଭ କରିଥିବା ପ୍ରାକ୍-ଐତିହାସିକ ଯୁଗର ସେହି ବିଶାଳକାୟ ସରୀସୃପମାନଙ୍କୁ ବର୍ତ୍ତମାନର ପୃଥିବୀପୃଷ୍ଠରେ ମନୁଷ୍ୟ ଏତେଦିନ ପରେ ପୁନର୍ବାର ସୃଷ୍ଟି କରିପାରିବ ?"

ଡଃ ରିଚମଣ୍ଡ ବନ୍ଧୁର ମାନସିକ ଅବସ୍ଥା ବୁଝିପାରିଲେ । ତାଙ୍କୁ ଜଣାଥିଲା ଯେ ତାଙ୍କର ବନ୍ଧୁଜଣକ ବହୁତ ଜିଦ୍‌ଖୋର । ସେ ଯେଉଁଟା ଜାଣିବାକୁ ଚାହିଁଛନ୍ତି, ତାହା ନ ଜାଣିବା ପର୍ଯ୍ୟନ୍ତ ତାଙ୍କର ଶାନ୍ତି ନାହିଁ । ସବୁ ସମୟରେ ନୂଆ କଥା ଜାଣିବା ପାଇଁ ସେ ବ୍ୟାକୁଳ ହୋଇଯାଆନ୍ତି ।

ତେଣୁ ତାଙ୍କୁ ଡ଼ାକିନେଇ ଡଃ ରିଚମଣ୍ଡ ବିଜ୍ଞାନଗାରରେ ଥିବା ସୋଫା ଉପରେ ବସାଇଲେ । ତା' ପରେ ଧୀରସ୍ୱରରେ କହିଲେ - "ତୁମେ କାହିଁକି ଡାଇନୋସର ବିଷୟରେ ଅଧିକ ଜାଣିବା ପାଇଁ ଇଚ୍ଛା ପ୍ରକାଶ କରୁଅଛ ? ଅବଶ୍ୟ ନିଜେ ତୁମେ ବିଜ୍ଞାନର ଛାତ୍ର ଥିଲ, କିନ୍ତୁ ବର୍ତ୍ତମାନ ତ ବ୍ୟବସାୟରେ ବୁଡ଼ି ରହିଛ । ଏହା ଭିତରେ ଡାଇନୋସର ବିଷୟରେ ଚିନ୍ତା କାହିଁକି ? ଏସବୁ ଦାୟିତ୍ୱ ଆମ୍ଭେମାନେ ହିଁ ନିଜ କାନ୍ଧକୁ ନେଇ ନେଇଛୁ.... ।"

ମିଃ ହାରଲ୍‌ଡ଼ ଏହା ଶୁଣି ଶାନ୍ତ ହେଲେ ଏବଂ ଧୀର ସ୍ୱରରେ କହିଲେ - "ଏ ଖବର ଶୁଣି ମନରେ ମୋର ଏକ ଚିନ୍ତା ଠୁକିଲା ଓ ସେଇଥିପାଇଁ ମୁଁ ତୁମ ପାଖକୁ ଧାଇଁ ଆସିଲି..... ।

ଡଃ ରିଚମଣ୍ଡ କହିଲେ - "ବହୁତ ଖୁସିର କଥା । ତା' ହେଲେ ତୁମ କଥା ଆଗ ଶୁଣାଯାଉ..... ।"

-"ତା ପୂର୍ବରୁ ତୁମେ ମୋତେ କୁହ ଯେ, ଏହା ଏକ ସତ୍ୟ ଘଟଣା ନା ମିଥ୍ୟା ଗୁଜବ ? ସତରେ କ'ଣ ବିଜ୍ଞାନାଗାର ଭିତରେ ଡାଇନୋସରମାନଙ୍କର ସୃଷ୍ଟି ସଂଭବ ହୋଇପାରିବ ?"

ଡଃ ରିଚମଣ୍ଡ ଗମ୍ଭୀର ସ୍ୱରରେ ଉତ୍ତର ଦେଲେ - "ଏସବୁ ବହୁତ ଗଭୀର ପରୀକ୍ଷା ନିରୀକ୍ଷାର ଘଟଣା ବନ୍ଧୁ । ତେବେ ବର୍ତ୍ତମାନ ପର୍ଯ୍ୟନ୍ତ ଯାହା ଆବିଷ୍କୃତ ହୋଇଛି, ତାକୁ ନେଇ ନିର୍ବିବାଦରେ କୁହାଯାଇପାରେ ଯେ, ମନୁଷ୍ୟ କାଳର ଗର୍ଭରେ ହଜି ଯାଇଥିବା ଡାଇନୋସରମାନଙ୍କୁ ବର୍ତ୍ତମାନ ଲୋକଲୋଚନକୁ ଫେରାଇ ଆଣିପାରିବ । ଆଉ ଖୁବ ଶୀଘ୍ର ଏହି ଯୁଗାନ୍ତକାରୀ ଘଟଣାଟି ଅବଶ୍ୟ ଘଟିବ ।"

ବନ୍ଧୁଙ୍କ କଥାରେ ମିଃ ହାରଲ୍‌ଡ଼ ଆନନ୍ଦରେ ବିହ୍ୱଳ ହୋଇଗଲେ । ସେ କହିଲେ - "ତା' ହେଲେ ମୋର ପରିକଳ୍ପନାଟି ଏଥର ଶୁଣନ୍ତୁ । କୋଷ୍ଟାରିକା ନିକଟରେ ମୁଁ ଗୋଟିଏ ଛୋଟ ଦ୍ୱୀପ କିଣିଛି । ତୁମେ ଯେତେ ପାରିବ ସେତେ ଡାଇନୋସର ତିଆରି କର । ସେଗୁଡ଼ିକୁ ମୋର ସେଇ ଦ୍ୱୀପରେ ରଖି ଦିଆଯିବ । ସେହି ଛୋଟ ଦ୍ୱୀପରେ ପାହାଡ, ସମତଳ ଅଂଚଳ, ଜଳାଶୟ ପ୍ରଭୃତି ସବୁକିଛି ରହିଛି । ଖୁବ୍ ମନଲୋଭା ପରିବେଶଟିଏ । ତୁମକୁ ଥରେ ସେହି ସ୍ଥାନକୁ ବୁଲାଇ ନେଇଯିବି ।

ଯେଉଁ ଉପାୟରେ ଡାଇନୋସରମାନଙ୍କୁ ସେଠାରେ ରଖାଯାଇ ପାରିବ, ମୁଁ ତାର ବନ୍ଦୋବସ୍ତ ମଧ୍ୟ କରୁଛି । ଇଚ୍ଛା କଲେ ତୁମର ବିଜ୍ଞାନାଗାରକୁ ମଧ୍ୟ ସେହି ସ୍ଥାନକୁ ସ୍ଥାନାନ୍ତରିତ କରାଯାଇ ପାରିବ ।''

''ବେଶ୍ ତା'ପରେ.... ? - ଅନ୍ୟମନସ୍କ ଭାବରେ କହିଲେ ରିଚମଣ୍ଡ ।



ଆଙ୍କିଲୋସରାସ- ଡାଇନୋସରମାନଙ୍କ ମଧ୍ୟରେ ଏମାନେ ଥିଲେ ସତେ ଯେପରି ଏକ ଜୀବନ୍ତ ଟ୍ୟାଙ୍କ । କିନ୍ତୁ ଶାକାହାରୀ । ସାଞ୍ଜୁଧାରୀ ଆତ୍ମୀୟବର୍ଗ ମଧ୍ୟରେ ଏମାନଙ୍କର ଅନ୍ୟତମ ବୈଶିଷ୍ଟ୍ୟ ହେଲା - ଏମାନେ ଯେପରି ଶତ୍ରୁର ଆକ୍ରମଣକୁ ପ୍ରତିରୋଧ କରିପାରନ୍ତି, ସେହିଭଳି ତାକୁ ପ୍ରତିଆକ୍ରମଣ କରି ବିପର୍ଯ୍ୟସ୍ତ କରିପାରନ୍ତି । ଶରୀରର ଉପର ଅଂଶ ପୁରା ଚମତ୍କାର ସାଞ୍ଜୁଦ୍ୱାରା ଘୋଡ଼ାଇ ହେବା ଭଳି ଦେଖାଯାଏ । ସାଞ୍ଜୁ ଶରୀରର ଉପର ଅଂଶରେ ଗୋଲାକୃତି ହାଡ଼ ଖଞ୍ଜା ଯାଇଥିବା ଭଳି ଜଣାପଡ଼େ । ସେ ତା'ର ଶକ୍ତ ଗଳାଦ୍ୱାରା ଶତ୍ରୁକୁ ବଙ୍କେଇ ଧରି ହାଡ଼ଗୁଣ୍ଡ କରିଦିଏ । ମାଂସାଶୀ ଶତ୍ରୁମାନଙ୍କର ଆସିବାର ଆଶଙ୍କା ପାଇଲେ ଏମାନେ ଚିତ୍କାର କରି ଡରାଇ ଦିଅନ୍ତି । ଏହାର ଅନ୍ୟଏକ ମାରାତ୍ମକ ଅସ୍ତ୍ର ହେଉଛି, ଲାଞ୍ଜରେ ଥିବା ତୀକ୍ଷ୍ଣ ହାଡ଼ର ଅଂଶବିଶେଷ । ଟୁକୁରା ଟୁକୁରା ହାଡ଼ ମିଶିକରି ହଜାରେ ଗୋଲାକାର ହାଡୁଡ଼ିର ସମଷ୍ଟିରେ ତାହା ତିଆରି ହେଲାଭଳି ଦେଖାଯାଏ । ଶତ୍ରୁ ଆକ୍ରମଣ କଲେ ଅତି ଜୋର୍‌ରେ ଏହି ଲାଞ୍ଜଦ୍ୱାରା ସେମାନଙ୍କର ଶରୀରରେ ସେ ଆଘାତ କରିପାରୁଥିଲା । ତା' ଲାଞ୍ଜର ବଜ୍ରାଘାତରେ ହିସ୍ରଂତମ ଡାଇନୋସର ଟିରାନୋସର ମଧ୍ୟ ଭୟରେ ପଳାଇଯିବାକୁ ଚେଷ୍ଟା କରେ ।

-''ମୁଁ ଚାହେଁ ଡାଇନୋସରମାନଙ୍କ ପାଇଁ ଗୋଟିଏ ଅଭୟାରଣ୍ୟ। ଅତ୍ୟାଧୁନିକ ବିଜ୍ଞାନ ଓ କାରିଗରୀ କୌଶଳକୁ ବିନିଯୋଗ କରି ସେହି ଅଂଚଳଟିକୁ ସଂରକ୍ଷିତ ରଖିବାକୁ ହେବ। ଏହାକୁ ଦେଖିବାକୁ ଆସିବେ ଦେଶ ବିଦେଶରୁ ଅସଂଖ୍ୟ ପରିଦର୍ଶକ। ସମସ୍ତଙ୍କ ମୁଖରେ ମୁଖରିତ ହେବ ଏହାର ଶିଳ୍ପୀ ଓ ନକ୍ସାକାରୀମାନଙ୍କର ଅବିସ୍ମରଣୀୟ କୀର୍ତ୍ତିକଳାପ। ଏହାରି ମଧ୍ୟରେ ସେମାନେ ଡାଇନୋସରମାନଙ୍କୁ ଜୀବିତାବସ୍ଥାରେ ଦେଖି ବିସ୍ମୟାଭିଭୂତ ହୋଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବେ, ତୁମର ଓ ମୋର ପ୍ରଶଂସା ଗାନ କରି କରି।''

- ''ତୁମର ଏହି ଅଭିଳାଷ ପ୍ରକୃତରେ ଖୁବ ଉଚ୍ଚକୋଟୀର....। ମୋ' ମତରେ ଏହାର ନାମକରଣ ହେବ 'ଡାଇନୋସର ପାର୍କ'।''

- ''ନା...ନା..., ଏହାର ନାମକରଣ ମଧ୍ୟ ମୁଁ ଠିକ୍ କରି ରଖିଛି। ଏହା ଡାଇନୋସର ଫାଇନୋସର ନୁହେଁ, ବରଂ ଯେଉଁ ସୁବର୍ଣ୍ଣଯୁଗରେ ଡାଇନୋସରମାନଙ୍କର ରାଜତ୍ୱ ଥିଲା, ତାହାରି ନାମାନୁଯାୟୀ ଏହା ହେବ 'ଜୁରାସିକ୍ ପାର୍କ'।''

ତା'ପରେ ଟିକିଏ ଦମ୍ ନେଇ ସେ ପୁଣି ଆରମ୍ଭ କଲେ - ''ତୁମେ ତ ଜାଣ ଯେ ଅସଂଖ୍ୟ ପ୍ରଜାତିର ଡାଇନୋସରଙ୍କ ମଧ୍ୟରୁ କେତେକ ଥିଲେ ଛୋଟ ଏବଂ ଆଉ କେତେକ ଖୁବ୍ ବଡ଼। ସେମାନଙ୍କ ମଧ୍ୟରୁ କେତେକ ମାଂସାହାରୀ ହୋଇଥିବାସ୍ଥଳେ ଆଉ କେତେକ ଥିଲେ ସଂପୂର୍ଣ୍ଣ ତୃଣଭୋଜୀ। ତୁମେ ସବୁ ପ୍ରକାରର ଡାଇନୋସର ତିଆରି କରି ସେଠାରେ ଛାଡ଼ିଦିଅ। ସେମାନେ ଯେପରି ମୁକ୍ତଭାବରେ ବିଚରଣ କରି ତାଙ୍କର ବଂଶବୃଦ୍ଧି କରିପାରିବେ, ସେଥିଲାଗି ସମସ୍ତ ଅନୁକୂଳ ବନ୍ଦୋବସ୍ତ ମଧ୍ୟ କରିବାକୁ ପଡ଼ିବ। ଅତଏବ ଆମ ସ୍ୱପ୍ନକୁ ସାକାର କରି ସେହି ଛୋଟ ଦ୍ୱୀପରୁ ଓହ୍ଲାଇ ଆସିବ ପ୍ରକୃତ 'ଜୁରାସିକ୍ ଯୁଗ'। ତେଣୁ ଏହାର ସ୍ଥାପନ ପାଇଁ ଯାହା ଯାହା ଦରକାର, ଚାଲ ଏବେଠାରୁ ତା'ର ବ୍ୟବସ୍ଥାରେ ଲାଗିପଡ଼ିବା। ଆମେ ଦୁହେଁ ହାତ ମିଳାଇଲେ କାମଟି ଶେଷ କରିବାରେ ନିଶ୍ଚୟ ସକ୍ଷମ ହେବା; ଯାହାକୁ ଦେଖି ସାରା ପୃଥିବୀର ଲୋକେ ହତଚକିତ ହୋଇଯିବେ।''

ତା'ପରେ ଦୁଇ ବନ୍ଧୁ ପରସ୍ପରକୁ ଅତି ଆନନ୍ଦରେ ଆଲିଙ୍ଗନ କଲେ।

x x x x

ଗୋଟିଏ ବିଶାଳକାୟ ପକ୍ଷୀ ଭଳି 'କଷ୍ଟାର' ଦ୍ୱୀପ ଅଭିମୁଖରେ ଆଗେଇ ଚାଲିଥିଲା। ତା'ର ଶବ୍ଦ ପାହାଡ଼ରେ ପ୍ରତିଧ୍ୱନିତ ହୋଇ ଫେରି ଆସୁଥିଲା। ଏହାର ନିମ୍ନ ଦେଶରେ ବହିଯାଉଥିବା ଝରଣାର କୁଳୁକୁଳୁ ନାଦ ସେମାନଙ୍କ କାନରେ ବାଜୁଥାଏ। 'କଷ୍ଟାର' ଯେପରି ଚେତେଇ ଦେଉଥାଏ - ଚାଲ, ସମଗ୍ର ଦ୍ୱୀପଟିକୁ କରାୟତ୍ତ କରିବା ଏବଂ ସେଇଠି ରଚନା କରିବା ବିସ୍ମୟକର 'ଜୁରାସିକ୍ ପାର୍କ' ଏବଂ ମନୁଷ୍ୟ କେବେ ଦେଖି ନଥିବା ପ୍ରାକ୍-ଐତିହାସିକ ଜୀବ ଡାଇନୋସର। ଆକାଶଚୁମ୍ବୀ ପାହାଡ଼ର ଅଗ୍ରଭାଗରୁ ଜଳଆଡ଼କୁ ଓହ୍ଲାଇବାକୁ ଲାଗିଲା 'କଷ୍ଟାର'।

ପାହାଡ଼ର ଚୂଡ଼ାରୁ ପ୍ରବଳ ବେଗରେ ନାଚି ନାଚି ବହି ଆସୁଥାଏ ଝରଣାର ଧାର। ସତେ ଯେମିତି 'କଷ୍ଟାର' ତାକୁ ହିଁ ଅନୁସରଣ କରୁଛି।

ତା'ପରେ ଯାନ ଭୂମି ସ୍ପର୍ଶ କଲା । ମିଃ ହାରଲ୍ଡ଼ ସମସ୍ତଙ୍କୁ ନେଇ 'କପ୍ଟର' ଭିତରୁ ବାହାରି ଆସିଲେ ।

ନିବିଡ଼ ଘନ ଜଂଗଲ ଘେରା ଛୋଟ ଦ୍ୱୀପଟିକୁ ସମସ୍ତେ ନିରୀକ୍ଷଣ କଲେ ଏବଂ କିଛିବାଟ ସେମାନେ ଚାଲି ଚାଲି ଦ୍ୱୀପଟିର ପରିବେଶ ଦେଖିବାକୁ ଲାଗିଲେ ।

ଡଃ ରିଚମଣ୍ଡ ସହାସ୍ୟ ବଦନରେ ସ୍ଥାନଟିକୁ ପ୍ରଶଂସା କରି ମିଃ ହାରଲ୍ଡ଼ଙ୍କୁ କହିଲେ - ''ଏଥର ତୁମେ କାର୍ଯ୍ୟ ଆରମ୍ଭ କରିଦିଅ.. ।''

ହାରଲ୍ଡ଼ କହିଲେ - ''ମୋର ସମସ୍ତ ପରିକଳ୍ପନା ପ୍ରସ୍ତୁତ ଅଛି । କେବଳ ତୁମ ସମ୍ମତିକୁ ମୁଁ ଅପେକ୍ଷା କରିଛି । ଏବେ ଦେଖିବ, ଖୁବ ଅଳ୍ପ ସମୟ ଭିତରେ ସବୁ ତିଆରି ହୋଇଯିବ । ମୋର ତ ଅର୍ଥର ଅଭାବ ନାହିଁ । କାର୍ଯ୍ୟର ବିଳମ୍ବ ଘଟିବ କାହିଁକି ?''

ଡାଇନୋସରମାନଙ୍କ ପାଇଁ ଅଂଚଳଟି ଖୁବ ଉଚ୍ଚ ପାଚେରୀ ଦ୍ୱାରା ଆବଦ୍ଧ ରହିବ । ପାଚେରୀର ଅଗ୍ରଭାଗରେ ଚତୁଃପାର୍ଶ୍ୱକୁ ଘେରି ରହିବ ବିଦ୍ୟୁତ୍ ତାର, ଯେଉଁଥିରେ କି ଅନବରତ ଦଶହଜାର ଭୋଲ୍ଟର ବିଦ୍ୟୁତ୍ ସଂଚାଳିତ ହେଉଥିବ । ଗବେଷଣାଗାରର ପ୍ରଧାନ ଅଂଶଟି ଦ୍ୱୀପର ଅନ୍ୟ ଏକ ପ୍ରାନ୍ତରେ ନିର୍ମିତ ହେବ । ସେହିଟି ହେବ ମୁଖ୍ୟ କାର୍ଯ୍ୟାଳୟ । ପାର୍କର ଭିତର ଅଂଶରେ ଗୋଟିଏ ପାଖରେ ଛୋଟ ଓ ମଧ୍ୟମ କାର୍ଯ୍ୟାଳୟ ଦୁଇଟି ମଧ୍ୟ ରହିବ ।

ପାର୍କ ଭିତରକୁ ପ୍ରବେଶ କରିବା ପାଇଁ ଗୋଟିଏ ପ୍ରଧାନ ଫାଟକ ନିର୍ମିତ ହେବ । ସେହି ବାଟ ଦେଇ ଏକ ସ୍ୱୟଂଚାଳିତ ଗାଡ଼ିରେ ଦର୍ଶକମାନେ ବସି ପାର୍କରେ ବୁଲାବୁଲି କରି ଡାଇନୋସରମାନଙ୍କୁ ଦେଖିପାରିବେ ।

ଦର୍ଶକମାନଙ୍କର ନିରାପତ୍ତା ପାଇଁ ପାର୍କର ଧାରରେ କେତୋଟି ୱାଚ ଟାୱାର ତିଆରି ହୋଇ ରହିବ । କୁହନ୍ତୁ ତ କେମିତି ଲାଗିବ.... ?

ଡଃ ରିଚମଣ୍ଡ କହିଲେ - ''ତୁମ କଳ୍ପନା ସହିତ ମୋର ଏହି ସ୍ୱପ୍ନ ଯେପରି ଯୋଡ଼ି ହୋଇଯାଉଛି । ନିଜ ସୃଷ୍ଟି ମାଧ୍ୟମରେ ମନୁଷ୍ୟ ତା'ର ଆନନ୍ଦ ଖୋଜି ବାହାର କରେ । ଏହି ଭାବପ୍ରବଣତା ହେଉଛି ପ୍ରତ୍ୟେକ ମନୁଷ୍ୟର ସ୍ୱଭାବଜାତ ଚରିତ୍ର । ମୋ' ହାତରେ ଦିନେ ତିଆରି ହେବ ଡାଇନୋସର ଅଣ୍ଡା । ସେହି ଅଣ୍ଡାଭିତରୁ ବାହାରି ଆସିବେ ଡାଇନୋସରମାନେ । ଏହି ପାଚେରୀଘେରା ସବୁଜ ଅରଣ୍ୟ ମଧ୍ୟରେ ସେମାନେ ନିର୍ବିଘ୍ନରେ ଘୁରି ବୁଲିବେ ।

ଗବେଷଣାଗାର ବାଲକୋନୀ ଉପରୁ ଡାଇନୋସରମାନଙ୍କୁ ଦେଖି ଛାତି ମୋର କୁଣ୍ଢେମୋଟ ହୋଇଯିବ । ତୁମ ଚେଷ୍ଟା ଓ ସହଯୋଗରେ ମୋର ଏହି ସ୍ୱପ୍ନ ସାକାର ହେଉ ।''

ଏହାପରେ ଆରମ୍ଭ ହୋଇଗଲା 'ଜୁରାସିକ୍ ପାର୍କ' ସ୍ଥାପନର ଆଦିପର୍ବ ।

## ଜୁରାସିକ୍ ପାର୍କର ସ୍ଥାପନ :

ପାର୍କ ସଂଲଗ୍ନ ଛୋଟ ସଂଗ୍ରହାଳୟ ପାଖରେ ଡଃ ରିଚମଣ୍ଡଙ୍କର ଗବେଷଣାଗାର ସ୍ଥାପିତ ହେଲା । ସେ କେତେକ ସହକାରୀ ବିଜ୍ଞାନୀମାନଙ୍କୁ ନେଇ ଡାଇନୋସର ତିଆରି କରିବାରେ ଲାଗିପଡ଼ିଲେ ।

ମଶାର ପେଟ ଭିତରୁ ମିଳିଥିବା ଡାଇନୋସର ରକ୍ତରେ ଥିବା ଜେନମ୍ ସାମାନ୍ୟ କ୍ଷତିଗ୍ରସ୍ତ ହୋଇଥିଲା । ଡଃ ରିଚମଣ୍ଡ ଗୋଟିଏ ବେଙ୍ଗର ଡ଼ି.ଏନ.ଏ.ରୁ ପାଇଥିବା ଏହିସବୁ ଜିନିଷ ସଂଗ୍ରହ କରି କ୍ଷତିଗ୍ରସ୍ତ ଅଂଶଟିକୁ ପୂରଣ କରିଦେଲେ । ସେହିଦିନଠାରୁ ତହିଁରୁ ଡ଼ାଇନୋସର ତିଆରି ହେବାର ଆଶା ଉଜ୍ଜ୍ୱଳ ହୋଇଗଲା । ଦିନେ ମିଃ ହ୍ୟାରଲ୍ଡ଼ ରିଚମଣ୍ଡଙ୍କ ସହିତ ସାକ୍ଷାତ କରିବା ପାଇଁ ଗବେଷଣାଗାରକୁ ବୁଲି ଆସିଲେ ଏବଂ ବନ୍ଧୁଙ୍କର କାର୍ଯ୍ୟକ୍ରମର ଅଗ୍ରଗତି ସମ୍ପର୍କରେ ଜାଣିବାକୁ ଚାହିଁଲେ ।

ଡଃ ରିଚମଣ୍ଡ କହିଲେ - ''ଅନେକ କଷ୍ଟରେ ମୁଁ କୁମ୍ଭୀରର ଡିମ୍ବାଣୁ ସଂଗ୍ରହ କରିଛି । ଏଥିରେ ଡାଇନୋସରର ଜେନମ୍ କଲମୀ କରି ଦିଆଯିବ । ଅତଏବ ତହିଁରୁ ଖୁବ୍ ଶୀଘ୍ର ତିଆରି ହେବ ଡାଇନୋସରମାନଙ୍କର 'ଅଣ୍ଡା ।''



ପିଠି ଉପରେ କଣ୍ଟାଭଳି ହାଡ଼ର ପାତ ବସାଯାଇଥିବା ଷ୍ଟିଗୋସରାସ, କେନଟ୍ରୋସରାସ, ଲେକ୍ସୋଭିସରାସ ପ୍ରଭୃତି ପୃଥିବୀର ବିଭିନ୍ନ ପ୍ରାନ୍ତରେ ଭ୍ରମଣ କରୁଥିଲେ । ଷୋହଳ କୋଟି ଏବଂ ସାଢ଼େଛଅ କୋଟି ବର୍ଷର ପୂର୍ବେ ଏମାନଙ୍କୁ ଦେଖାଯାଉଥିଲା । ଏମାନଙ୍କୁ ହସ୍ତୀପଦ ଡାଇନୋସର କୁହାଯାଏ । ଏମାନଙ୍କର ଗତି ମଧ୍ୟ ହାତୀ ଭଳି ଧୀର । ଶରୀର ଉପରେ ଦୁଇଧାଡ଼ି ଦୀର୍ଘ ହାଡ଼ର ତୀକ୍ଷ୍ଣ କଣ୍ଟା ଗଳାଠାରୁ ଲାଞ୍ଜ ପର୍ଯ୍ୟନ୍ତ ଲମ୍ବି ଯାଇଥାଏ ।

"ସେ ଅଣ୍ଡା ପୁଣି କି କାମରେ ଲାଗିବ ? ସେଥିରୁ କିପରି ଡାଇନୋସର ଜନ୍ମ ନେବ ?"

- ଆଗେ ମୋ କଥା ମନ ଦେଇ ଶୁଣ..... ।

ଡାଇନୋସରମାନଙ୍କର ପୂର୍ବପୁରୁଷ ହେଲା ଏକ ପ୍ରକାର ବହୁରୂପୀ ଶ୍ରେଣୀର ଜୀବ । ଏମାନେ ଦୁଇ ପାଦରେ ଭାରସାମ୍ୟ ରକ୍ଷା କରି କୁକୁଡ଼ା ବା ଓଟପକ୍ଷୀ ଭଳି ଚାଲିପାରନ୍ତି । ଏହିମାନଙ୍କଠାରୁ ହିଁ ବିଭିନ୍ନ ଜାତିର ଡାଇନୋସରମାନେ ଉଦ୍ଭବ ହୋଇଛନ୍ତି । ଏହାର ଗୋଟିଏ ଜାତିର ଅଂଶରୁ ବର୍ତ୍ତମାନର କୁମ୍ଭୀର ଓ ସାପଭଳି ସରୀସୃପ ସୃଷ୍ଟି ହୋଇଛନ୍ତି । ଏଣୁ ଜୁରାସିକ୍-କ୍ରିଟୋସିୟାସ୍ ଯୁଗରେ ସଂଘଟିତ ଡାଇନୋସରମାନଙ୍କର ବିବର୍ତ୍ତନ ସହିତ କୁମ୍ଭୀରର ସମ୍ପର୍କ ଖୁବ୍ ଘନିଷ୍ଠ । ଏହି କାରଣରୁ କୁମ୍ଭୀରର ଡିମ୍ବାଣୁ ସଂଗ୍ରହ କରାଯାଇଛି । ତାହା ମଧ୍ୟରେ ରଖାଯାଇଛି ଡାଇନୋସରମାନଙ୍କର ଜେନମ୍ - ଯହିଁରେ କି ପ୍ରାଣୀର ସମସ୍ତ ଜିନ୍ ବା ଜୈବିକ ଚରିତ୍ରର ମୂଳସୂତ୍ର ରହିଛି । ଏହାପରେ ପକ୍ଷୀଙ୍କ ଅଣ୍ଡାର କେଶର ମଧ୍ୟରେ ଏହି ଡିମ୍ବାଣୁଟିକୁ ଭର୍ତ୍ତି କରିଦିଆଯିବ । ଅତଏବ ତାହା ପରିଣତ ହୋଇଯିବ ଡାଇନୋସରର ଅଣ୍ଡାରେ । ଆଗାମୀ ସପ୍ତାହପରେ ତୁମେ ଏଭଳି ଅଣ୍ଡା ଦେଖିବାକୁ ପାଇବ ।

- "ଅଣ୍ଡା ନୁହେଁ, ମୁଁ ଡାଇନୋସର ଜୀବକୁ ଦେଖିବାକୁ ଚାହେଁ... । ଅତି ଆବେଗର ସହ ମୁଁ ଅପେକ୍ଷା କରିରହିଛି ସେହି ସୁବର୍ଣ୍ଣ ମୁହୂର୍ତ୍ତଟିକୁ, ଯେତେବେଳେ କି ଦର୍ଶକମାନଙ୍କୁ ଡାଇନୋସର ଦେଖାଇବା ପାଇଁ ସକ୍ଷମ ହେବି.... ।"

- "ଏହା ନିଶ୍ଚୟ ହେବ ବନ୍ଧୁ... ନିଶ୍ଚୟ ହେବ.... । ଖୁବ୍ ଶୀଘ୍ର ତୁମର ସ୍ୱପ୍ନ ସାକାର ରୂପନେବ । ପ୍ରଥମେ ଦେଖିବାକୁ ସୁଯୋଗ ଦିଅ ଅଣ୍ଡା ଫୁଟିବା ପରେ ତା' ଭିତରୁ କ'ଣ ବାହାରୁଛି ?"

ସେଦିନ ପାଇଁ ରିଚମଣ୍ଡଙ୍କୁ ଶୁଭେଚ୍ଛା ଜଣାଇ ମିଃ ହାରଲ୍ଡ଼ ବିଦାୟ ନେଲେ ।

ଅଣ୍ଡାଗୁଡ଼ିକ ପ୍ଲାଷ୍ଟିକ ଖୋଳରେ ତିଆରି ହୋଇଥିଲା । ସେଗୁଡ଼ିକ ଭିତରେ ପକ୍ଷୀ ଅଣ୍ଡାର କେଶରରେ ଡାଇନୋସରର ଜେନମ୍ କଲମୀ କରି ରଖାଯାଇଥିଲା ।

ଡଃ ରିଚମଣ୍ଡ, ତାଙ୍କର ଶିକ୍ଷିତା କନ୍ୟା ଲିରା, ଅନ୍ୟ ଦୁଇ ଜଣ ନାତିନାତୁଣୀ, ସହକାରୀ ବିଜ୍ଞାନୀଯୁବକ ଜେମସ୍‌ଙ୍କ ସହିତ ଅତି ଆଗ୍ରହର ସହିତ ଚାହିଁ ରହିଥାନ୍ତି ଅଣ୍ଡାଗୁଡ଼ିକୁ । ଏହାରି ଖୋଳ ମଧ୍ୟରେ ତାଙ୍କର ଅକ୍ଳାନ୍ତ ପରିଶ୍ରମ ଓ ସାଧନାର ଫଳ ଲୁକ୍କାୟିତ ହୋଇ ରହିଛି ।

ହଠାତ୍ ଗୋଟିଏ ଅଣ୍ଡାର ଖୋଳ ଫାଟିଗଲା । କ୍ରମେ ସେହି ଫଟାଅଂଶକୁ ଠେଲି ଏକ କ୍ଷୁଦ୍ର ମଥା ହଲଚଲ ହୋଇ ବାହାରି ଆସି ପୁଣି ଭିତରକୁ ପଶିଗଲା । ସଫଳତାର ଆନନ୍ଦରେ ଡଃ ରିଚମଣ୍ଡ ଓ ଅନ୍ୟ ସମସ୍ତେ ବିହ୍ୱଳ ହୋଇଉଠିଲେ ।

ତା'ପରେ ସେହି କ୍ଷୁଦ୍ର ମଥାଟି ଅଣ୍ଡା ଭିତରୁ କ୍ରମେ ଅଧିକରୁ ଅଧିକ ବାହାରିବାକୁ ଲାଗିଲା । ଡଃ ରିଚମଣ୍ଡ ଦୁଇ ହାତରେ ଆସ୍ତେ କରି ତହିଁରୁ କ୍ଷୁଦ୍ର ଶାବକଟିକୁ ବାହାର କରି ଆଣିଲେ । ଏହା ହେଲା, ଶାବକ ଡାଇନୋସର - ମନୁଷ୍ୟର ହାତ ତିଆରି ପ୍ରଥମ ଡାଇନୋସର.... ।

ଗୋଟିଏ ଗୋଟିଏ ଅଣ୍ଡା ଫୁଟାଇ ଡାଇନୋସର ଶିଶୁମାନଙ୍କୁ ଜନ୍ମ କରାଇଲେ ଡଃ ରିଚମଣ୍ଡ । ଏଗୁଡ଼ିକର ନାମ ହେଲା - ଡାକବିଲ, ଷ୍ଟେଗୋସରାସ୍, ବ୍ରାକିଓସର, ଟିରାନୋସରାସ୍ ।

ମିଃ ହାର୍‌ଲଡ଼ ଖବର ପାଇ ଧାଇଁ ଆସିଲେ ।

ଡଃ ରିଚମଣ୍ଡ କହିଲେ - ''ଆସ, ନୂଆ ଅତିଥିମାନଙ୍କୁ ତୁମ ସହ ପରିଚିତ କରାଇଦିଏ । ଏତେକାଳ ହେଲା ଏମାନଙ୍କର ଛବି ଦେଖି ନାମ ମୁଖସ୍ଥ କରିଦେଇଛ । ଏହି ଦେଖ, ଏ ହେଲା ଷ୍ଟୋଗୋସରାସ୍, ଏହାର ନାକ ଉପରେ ଖଡ଼୍‌ଗଟି ଏ ପର୍ଯ୍ୟନ୍ତ ସ୍ପଷ୍ଟ ହୋଇନାହିଁ । ଆଉ ଅଳ୍ପ ଦିନପରେ ସେହି ଅଂଶଟି ଗଜୁରି ଉଠିବ । ଏହାର ଗଳା ଚାରିପଟରେ ଯେଉଁ ଏକ ପତଳା ପର୍ଦ୍ଦାଭଳି ରହିଛି, ଏଇ ହେଲା ତା'ର ଭବିଷ୍ୟତର ବର୍ମ ।

ହଁ... ସେଇଟି ହେଲା, ବ୍ରାକିଓସର । ଏହା ହେଲା ଡାଇନୋସରମାନଙ୍କ ମଧ୍ୟରେ ସବୁଠାରୁ ଅଧିକ ଦୀର୍ଘତମ । ଏ ଦୁଇ ଜାତି ନିରାମିଷଭୋଜୀ ଅଟନ୍ତି ।




ଆଦିମ ପକ୍ଷୀ ଆର୍କିଅପଟୋରିକ୍ସ ହେଉଛି ସରୀସୃପ ଓ ପକ୍ଷୀର ମଝାମଝି । ପକ୍ଷୀଭଳି ଏମାନଙ୍କର ପର ଓ ଡେଣା ଥିଲା । କିନ୍ତୁ ଦେହରେ କଙ୍କାଳର ଗଠନର ସାଦୃଶ୍ୟ ରହିଛି । ପ୍ରାୟ କମସୋଗନ୍ୟାଥାସ୍ ଡାଇନୋସର ସହିତ କ୍ଷୁଦ୍ର ଆକୃତିର ମାଂସଭୋଜୀ । ଏହି ଡାଇନୋସର ଖୁବ୍ ଦ୍ରୁତ ଗତିରେ ଦଉଡ଼ିପାରୁଥିଲେ ।

''- ଆଉ ଏଇ ଯେଉଁ ପ୍ରାଣୀଟି ଜନ୍ମ ନେଇଛି, ସେଇଟା ହେଲା ଆମିଷଭୋଜୀ । ତା'ର ନାମ ହେଲା ଟିରାନୋସରାସ୍ । ପୃଥିବୀର ଯେତେ ଆମିଷଭୋଜୀ ପ୍ରାଣୀ ଅଛନ୍ତି, ଏମାନେ ହେଲେ ତନ୍ମଧ୍ୟରୁ ସବୁଠାରୁ ବୃହତ୍ତମ ।''

ତା'ପରେ ସେ ପାଖରେ ଥିବା ଅନ୍ୟ ଦୁଇଟି କ୍ଷୁଦ୍ର ଡାଇନୋସରକୁ ଧରି ନେଇ କହିଲେ - ''ଏଗୁଡ଼ିକ ହେଲେ ହଂସଚଞ୍ଚୁ ଡାଇନୋସର । ଏଗୁଡ଼ିକ ବଡ଼ ହେଲେ ସେମାନଙ୍କ ମଥାରେ ଖୁବ୍ ସୁନ୍ଦର ସଛିଦ୍ର ଚୂଡ଼ା ଫୁଟି ଉଠିବ । ଏହି ଛିଦ୍ର ମାଧ୍ୟମରେ ଏହା ନିଃଶ୍ୱାସପ୍ରଶ୍ୱାସ ନେବା ସହିତ ଦୂରରୁ ତୀକ୍ଷ୍ଣ ଶବ୍ଦ ବାରିପାରିବ ।''

ନବନିର୍ମିତ 'ଜୁରାସିକ୍‌ପାର୍କ'ରେ ନୂତନ ପ୍ରାଣୀମାନଙ୍କର ବସବାସ ଆରମ୍ଭ ହୋଇଗଲା । ତୃଣଭୋଜୀମାନଙ୍କ ପାଇଁ ସେଥିରେ ଥିଲା ଜଂଗଲ ଏବଂ ମାଂସାଶୀମାନଙ୍କୁ ଗାଈଗୋରୁ, ମଇଁଷି ଓ ଛେଳି ପ୍ରଭୃତି ପ୍ରାଣୀ ନିୟମିତ ଭାବରେ ଯୋଗାଇ ଦିଆଗଲା । ଏହି ଆଦର ପାଇ ଦିନକୁ ଦିନ ଡାଇନୋସରମାନେ ବଢ଼ିବାକୁ ଲାଗିଲେ ।

କ୍ରମଶଃ ଗବେଷଣାଗାରରେ କାର୍ଯ୍ୟ ବହୁ ପରିମାଣରେ ହ୍ରାସ ପାଇଛି । ଡାଇନୋସରମାନେ ବଡ଼ ହୋଇ ନିଜେ ନିଜର ବଂଶବୃଦ୍ଧି କରିବାକୁ ଲାଗିଲେଣି ।

## ଜୁରାସିକ୍ ପାର୍କରେ ପରିଭ୍ରମଣ :

ଡଃ ରିଚମଣ୍ଡ ଥରେ ତାଙ୍କର ନାତିନାତୁଣୀ ଓ ଜଣେ ସହକାରୀ ପ୍ରଫେସରଙ୍କୁ ସାଥୀରେ ନେଇ ପାର୍କ ବୁଲିବାକୁ ଗଲେ । ନାତି ଜ୍ୟାକ୍ ଓ ନାତୁଣୀ ଜେଲି, ଦୁଇଜଣଙ୍କର ବୁଦ୍ଧି ଖୁବ୍ ବିଚକ୍ଷଣ । ଯେଉଁମାନଙ୍କର ଅଜା ଏତେବଡ଼ ବିଜ୍ଞାନୀ, ସେମାନେ ଅବା କାହିଁକି ପଛରେ ପଡ଼ିଯିବେ ?

ଜ୍ୟାକ୍ କହିଲା - ''ଡାଇନୋସରମାନଙ୍କୁ ମୁଁ ଭୟ କରେ ନାହିଁ । ମୁଁ ଏକା ଏକା ପାର୍କ ଭିତରେ ପଶି ବୁଲାବୁଲି କରିବି... ।''

ଭଉଣୀ ଜେଲି କହିଲା - ''ହୁଃ, ମଣିଷଖିଆ ଡାଇନୋସରମାନେ ଏଠାରେ ରହିଛନ୍ତି । ବୁଟଭଜା ଭଳି ଏମାନେ ତୋତେ ପାଟିରେ ପକାଇଦେବେ... ।''

-''ପାଟିରେ ପକାଇଦେବେ ନା ଆଉ କ'ଣ କରିବେ ? ମୁଁ ଅଜାଙ୍କ ନାମ କହିଲେ ସେମାନଙ୍କର ପିଳେହିପାଣି ହୋଇଯିବ । ଜାଣିଛୁ, ଅଜା ପରା ସେମାନଙ୍କୁ ତିଆରି କରିଛନ୍ତି... ।''

ଜ୍ୟାକ୍‌ର କଥାଶୁଣି ସମସ୍ତେ ହୋ ହୋ ହୋଇ ହସି ଉଠିଲେ ।

ଡଃ ରିଚମଣ୍ଡ କହିଲେ - ''ତୁମେମାନେ ଗାଡ଼ିଭିତରୁ ବାହାରି ଆସିବନାହିଁ । ଗାଡ଼ି ଝର୍କାର କାଚ ମଧ୍ୟଦେଇ ଗାଡ଼ିଭିତରେ ରହି ସବୁଖେଳ ଦେଖିପାରିବ । ମୁଁ ମୁଖ୍ୟ କାର୍ଯ୍ୟାଳୟରେ ଅଛି, ଦରକାର ହେଲେ ଖବର ଦେବ ।''

ଜେଲି ଅଜାଙ୍କ ସହିତ ଚାଲିଗଲା ।

ଦୁଇଟି ସ୍ୱୟଂଚାଳିତ ଗାଡ଼ିରେ ଅନ୍ୟମାନେ ପାର୍କଆଡ଼କୁ ଅଗ୍ରସର ହେଲେ । ଆଗଗାଡ଼ିରେ ଲିରା ଓ ପ୍ରଫେସର ବିଲ୍ ଏବଂ ପଛଗାଡ଼ିରେ ଜ୍ୟାକ୍ ସହିତ ଦି'ଜଣ ପାର୍କର କର୍ମଚାରୀ ବସିଲେ ।

'ଜୁରାସିକ୍ ପାର୍କ'ର ପ୍ରଧାନ ଫାଟକଟି ସ୍ୱୟଂଚାଳିତ । ଗାଡ଼ିଟି ସେଠାରେ ଫାଟକ ପାଖରେ ପହଞ୍ଚିବାକ୍ଷଣି ତାହା ଆପେ ଆପେ ଖୋଲି ହୋଇଗଲା ।

ଗାଡ଼ି ପାରହେବା ସଂଗେ ସଂଗେ ଫାଟକ ପୁଣି ବନ୍ଦ ହୋଇଗଲା । କିଛିଦୂର ଗଲାପରେ ଜ୍ୟାକ୍ ଗାଡ଼ିରୁ ଓହ୍ଲାଇ ପଡ଼ିଲା ଏବଂ କହିଲା -''ମୁଁ ଚାଲିଚାଲି ସେ ନୂତନ ପ୍ରାଣୀମାନଙ୍କୁ ଦେଖିବି ।'' ଏହା ଦେଖି ଲିରା ଓ ପ୍ରଫେସର ମଧ୍ୟ ଗାଡ଼ିରୁ ଓହ୍ଲାଇପଡ଼ିଲେ । ବୁଲୁ ବୁଲୁ ସେମାନେ ପାର୍କର ଭିତର ପଟରୁ ଏକ ବିଚିତ୍ର ଶବ୍ଦ ଶୁଣିବାକୁ ପାଇଲେ । ଏହି ଗମ୍ଭୀର ଶବ୍ଦରେ ବିସ୍ମିତ ହୋଇ ଜ୍ୟାକ୍ ପ୍ରଫେସରଙ୍କ ମୁହଁକୁ ଚାହିଁଲା ।

ପ୍ରଫେସର କହିଲେ - ''ଏହା କୌଣସି ପକ୍ଷୀର ଡାକ ନୁହେଁ, ତାହା ହୋଇଥିଲେ ମୁଁ ତା'ର ନାଁ କହିପାରିଥାନ୍ତି । ବୋଧହୁଏ ଏହା ଏକ ଡାଇନୋସରର ଶବ୍ଦ । ଏମାନେ କିଭଳି ଶବ୍ଦ କରନ୍ତି ମୁଁ ତାହା ସହିତ ସେତେଟା ପରିଚିତ ନୁହେଁ । ଅବଶ୍ୟ କେତେକ ଡାଇନୋସର ଆଦୌ ଶବ୍ଦ କରିପାରନ୍ତି ନାହିଁ । ତେବେ ଡକ୍‌ବିଲମାନଙ୍କ ଭଳି କେତେକଙ୍କ ଶବ୍ଦ ମୁଁ କିଛି ଦିନ ଆଗରୁ ଶୁଣିଛି ।''

କଥା କହୁ କହୁ ପ୍ରଫେସର ଓ ଲିରା ଆଗକୁ ମାଡ଼ି ଚାଲିଥାନ୍ତି । ଜ୍ୟାକ୍ କେତେବେଳେ ପଛକୁ ତ କେତେବେଳେ ଆଗକୁ ଯାଇ ପାର୍କର ମନୋରମ ପରିବେଶକୁ ଉପଭୋଗ କରୁଥାଏ । ଯାଉ ଯାଉ ସେ କହିଲା - ''କାହିଁ ମୁଁ ତ କୌଣସି ଆଡ଼େ କାହାରିକୁ ଦେଖିବାକୁ ପାଉନାହିଁ ?''

ପ୍ରଫେସର କହିଲେ - ''ଦେଖ, ଏଇ ଅଳ୍ପ ଦୂରରେ ଯେଉଁ ବଡ଼ ବଡ଼ ଗଛ ରହିଛି, ସେଥିରୁ ଜିରାଫର ବେକଭଳି ଲମ୍ବା ବେକ ଥିବା ଡାଇନୋସରଟିଏ କଅଁଳିଆ ପତ୍ର ଖାଉଛି । ତା' ନାମ ହେଉଛି ବ୍ରାକିଓସର ।''

ପ୍ରାଣୀଟି ଗଛ ପାଖରେ ନିଃଶବ୍ଦରେ ଠିଆ ହୋଇଥିଲା । ଏପରି ଗଛ ଭଳି ଉଚ୍ଚ ଓ ହାତୀଭଳି ଆୟତନର ପ୍ରାଣୀ ଥାଇପାରେ ବୋଲି ଜ୍ୟାକ୍ କଳ୍ପନା ମଧ୍ୟ କରିପାରି ନ ଥିଲା ।

ସେ କିଛିବାଟ ଦଉଡ଼ିଯାଇ ପୁଣି ଅଟକିଗଲା ଏବଂ ପଚାରିଲା - ''ସେ କାମୁଡ଼ି ଦେବ ନାହିଁ ତ ?''

ପ୍ରଫେସର କହିଲେ - ''ଚାଲ ଆମେ ମଧ୍ୟ ଯିବୁ । ଅତି ନିକଟକୁ ଯିବନାହିଁ, କାରଣ ସେ ଯଦି ଧକ୍କାଟାଏ ଦେବ, ତା'ହେଲେ ତୁମେ ଅନେକ ଦୂରକୁ ଛିଟିକି ପଡ଼ିବ... ।''

ସେମାନେ ବ୍ରାକିଓସର ନିକଟବର୍ତ୍ତୀ ହେଲେ । କିନ୍ତୁ ସେ ତାଙ୍କଆଡ଼େ ଆଦୌ ଚାହିଁଲା ନାହିଁ । ନିର୍ବିକାର ଚିତ୍ତରେ ସେ ଗଛର ପତ୍ରଗୁଡ଼ିକୁ ଖାଇବାରେ ଲାଗିଥାଏ ଏବଂ ଧୀର ମନ୍ଥର ଗତିରେ ପାହୁଣ୍ଡ ପକାଇ ଆଗକୁ ଚାଲୁଥାଏ ।



ଅତିକାୟ ଶାକାହାରୀ ଡାଇନୋସର ବ୍ରାକିଓସରାସମାନେ ଚଳନ୍ତି ମାଂସର ସ୍ତୁପ କହିଲେ ଅତ୍ୟୁକ୍ତି ହେବନାହିଁ। ବିଚିତ୍ର ଏହି ପ୍ରାଣୀର ନାକ ଉପର ମାଂସପେଶୀରେ ଛିଦ୍ର ଥିଲା। ଏମାନେ ଶକ୍ତିଶାଳୀ ହୃଦ୍‌ଯନ୍ତ୍ରର ଚାପ ପ୍ରୟୋଗ କରି ଆଠ ମିଟର ଉଚ୍ଚରେ ଥିବା ମସ୍ତିଷ୍କକୁ ରକ୍ତ ସଞ୍ଚାଳନ କରିପାରୁଥିଲା। ଅନୁମାନ କର କେତେ ବିରାଟ ଏହି ଜନ୍ତୁଟି।

ଜ୍ୟାକ୍ ଆଉ ସମ୍ଭାଳି ପାରିଲା ନାହିଁ। ସେ ଛପି ଛପି ଯାଇ ବ୍ରାକିଓସର ଦେହ ଚମଡ଼ାକୁ ଟାଣିନେଲା। ତା'ର ଏଭଳି ଦୁଃସାହସିକ କାଣ୍ଡ ଦେଖି ଲିରା ଓ ପ୍ରଫେସର ହସି ଉଠିଲେ।

ଏହାପରେ ଅନ୍ୟ ଦିଗକୁ ଦୃଷ୍ଟି ପକାଇ ପ୍ରଫେସର ସେମାନଙ୍କୁ ଅଳ୍ପ ଦୂରରେ ଥିବା ସାଞ୍ଜୁ ପିନ୍ଧିଲା ଭଳି ଦେଖାଯାଉଥିବା ଗୋଟିଏ ଟ୍ରାଇସେରାଟୋପକୁ ଦେଖାଇଲେ। ଆଗକୁ ଯାଉ ଯାଉ ସେ ଜ୍ୟାକ୍‌କୁ ନିଜ ପାଖକୁ ଡାକିଲେ - ''ଏଇ ଭୂଇଁ ଉପରେ ଶୋଇଥିବା ଜୀବଟିକୁ ଦେଖ। ଏହା ହେଲା ଟ୍ରାଇସେରାଟୋପ। ଏହାର ନାକ ଉପରେ ତିନିଟି ଖଡ଼୍‌ଗ ଭଳି ଶିଙ୍ଗ ରହିଛି।''

ଜ୍ୟାକ୍ ଧୀରେ ଧୀରେ ସେହି 'ଜନ୍ତୁଟି ପାଖକୁ ଯାଇ ତା'ର ମୋଟା ଚମଡ଼ା ଦ୍ୱାରା ଆବୃତ ଦେହରେ ହାତ ବୁଲାଇଲା। ସେ ହଲ୍‌ଚଲ୍ ନ ହେବାରୁ ତା' ପିଠି ଉପରେ ବସିପଡ଼ିଲା। ଟ୍ରାଇସେରାଟୋପ ଅଗାଧ ନିଦ୍ରାରେ ଶୋଇଯାଇଥିଲା। ତା' ପିଠି ଉପରେ କେହି ବସିଛି କି ନାହିଁ ତାକୁ ତାହା ଜଣା ପଡ଼ିଲା ନାହିଁ। ପ୍ରଫେସର ନିଜେ ବି ତା' ପିଠି ଉପରେ ଚଢ଼ିଲେ ଏବଂ ପକେଟରୁ ସିରିଞ୍ଜଟିଏ ବାହାର କରି ତା' ଦେହରୁ ରକ୍ତ ସଂଗ୍ରହ କଲେ।

ଅକସ୍ମାତ୍ ଦୂରରୁ ଠିକ୍ ପୂର୍ବଭଳି ମେଘ ଗର୍ଜନର ଶବ୍ଦ ଶୁଭିଲା । ସମସ୍ତେ ଆକାଶକୁ ଅନାଇଲେ । କୌଣସିଆଡ଼େ ମେଘ ଉଠାଇବାର ଦେଖିବାକୁ ମିଳିଲା ନାହିଁ । ତା' ହେଲେ ଏହି ଗର୍ଜନ ଆସିଲା କେଉଁଠୁ ?

ଏହାପରେ ପୁଣି ଦ୍ୱିତୀୟଥର ଖୁବ୍ ନିକଟରେ ସେ ଗର୍ଜନ ଶୁଭିଲା । କ୍ରମଶଃ ତାହା ନିକଟରୁ ନିକଟତର ହେଲା । ଏହା ଶୁଣି ସେମାନେ ଡରିଗଲେ । ପାର୍କ ଭିତରେ ଗଛତଳେ ଲୁଚିଯିବେ' ନା ଗାଡ଼ି ଭିତରକୁ ଦଉଡ଼ି ପଳାଇବେ ସେମାନେ କିଛି ଭାବି ପାରିଲେ ନାହିଁ । ଏଣୁ ପ୍ରଫେସର କହିଲେ - ''ଏଠାରେ ରହିବା ବିପଦଜନକ । ତେଣୁ ଚାଲ ଗାଡ଼ି ଭିତରକୁ ପଳାଇବା... ।''

ତା'ପରେ ସେମାନେ ଗାଡ଼ି ନିକଟକୁ ଧାଇଁବାକୁ ଲାଗିଲେ ।

## ଜୁରାସିକ୍ ପାର୍କରେ ଦୁଃସାହସିକ ଅନୁଭୂତି :

ପ୍ରଥମେ ଲିରା ତା' ଗାଡ଼ିରେ ବସି ପଡ଼ି ଷ୍ଟାର୍ଟ କରିଦେଲା । ପ୍ରଫେସର ଓ ଜ୍ୟାକ୍ ତାଙ୍କ ଗାଡ଼ି ଭିତରକୁ ପଶିଲାବେଳକୁ ତାଙ୍କୁ ଆକ୍ରମଣର ସୂଚନା ମିଳିଯାଇଥିଲା । ସେହି ବିକଟାଳ ରୂପଧାରୀ ଜାନୁଆରଟି ସେତେବେଳକୁ ଗର୍ଜନ କରି ଖୁବ୍ ପାଖରେ ପହଞ୍ଚି ଯାଇଥିଲା ।

ଗାଡ଼ି ଭିତରେ ପାର୍କର ଦୁଇଜଣ କର୍ମଚାରୀ ଆଗରୁ ବସିଥିଲେ । ସେମାନେ ଭୟରେ ଚିତ୍କାର କରିବାକୁ ଲାଗିଲେ । ଗାଡ଼ି ଷ୍ଟାର୍ଟ କରୁ କରୁ ପ୍ରଫେସର ସମସ୍ତଙ୍କୁ ସତର୍କ କରାଇ, କହିଲେ - ''ସର୍ବନାଶ, ଏଇଟା ଗୋଟାଏ ଟିରାନୋସରାସ୍... ।'' ତାଙ୍କ ପାଟିରୁ କଥା ସରିବା ପୂର୍ବରୁ ଡାଇନୋସରର ପ୍ରଚଣ୍ଡ ଧକ୍କାରେ ଗାଡ଼ିଟି ଓଲଟି ପଡ଼ିଲା । ଜ୍ୟାକ୍ ଓ ପ୍ରଫେସର ଦୁଇଜଣ ଛିଟିକି ପଡ଼ିଲେ ଏବଂ ଶତ୍ରୁର ଆକ୍ରମଣରୁ ରକ୍ଷା ପାଇବା ପାଇଁ ଗାଡ଼ି ଉହାଡ଼କୁ ଚାଲି ଆସିଲେ । ପାର୍କର କର୍ମଚାରୀଙ୍କ ମଧ୍ୟରୁ ଜଣେ ଗାଡ଼ି ଚାପାରେ ମୃତ୍ୟୁବରଣ କଲା ଏବଂ ଅନ୍ୟଜଣେ ଚକାତଳେ ଲୁଚିଗଲା । କିନ୍ତୁ, ଟିରାନୋସରାସ୍‌ଟି ଶିକାର ଆଶାରେ ଗାଡ଼ି ପାଖରେ ବୁଲୁଥିଲା । ତା' ନଜର ବିଚରା କର୍ମଚାରୀଟି ଉପରେ ପଡ଼ିଗଲା । ତତ୍‌କ୍ଷଣାତ୍ ତାକୁ ଗୋଡ଼ଆଡୁ କାମୁଡ଼ି ଧରି ଟାଣି ଆଣିଲା ଏବଂ ଗିଳିବାକୁ ଲାଗିଲା । କର୍ମଚାରୀଟି ପ୍ରାଣ ବିକଳରେ ଛଟପଟ ହେଉଥାଏ । ତା'ପରେ ଡାଇନୋସରଟି ଗର୍ଜନ କରି ଆପଣା ବାଟରେ ଜଙ୍ଗଲ ଭିତରକୁ ଚାଲିଗଲା ।

ଲିରା ଏହି ଆକ୍ରମଣ ଘଟିବାର ଠିକ୍ ପୂର୍ବରୁ ପ୍ରାଣପଣେ ଗାଡ଼ି ଛୁଟାଇ ମିଉଜିୟମ ପାଖକୁ ଚାଲିଯାଇଥିଲେ । ତେବେ କୌଣସି ଏକ ଦୁର୍ଘଟଣା ଘଟିଗଲା ବୋଲି ସେ ଜାଣିପାରିଥିଲେ ।

ପ୍ରଫେସର ଜ୍ୟାକ୍‌କୁ ନେଇ କିପରି ପାର୍କ ବାହାରକୁ ଆସିବେ କିଛି ଠିକ୍ କରିପାରିଲେ ନାହିଁ । ସେମାନେ ଆଗକୁ ଧୀରେ ଧୀରେ ଅଗ୍ରସର ହୋଇ ଏକ ଗଛ ଉହାଡ଼ରେ ଠିଆ ହେଲେ ।

ହଠାତ୍ ମୁକ୍ତ ଆକାଶରେ କଳାବାଦଲ ଛାଇଗଲା । ଘନ ଘନ ବିଜୁଳି ମାରିବା ଓ ଘଡ଼ଘଡ଼ି ଶବ୍ଦ ସହିତ ପ୍ରବଳରୁ ପ୍ରବଳତର ବର୍ଷା ବର୍ଷିବାକୁ ଲାଗିଲା । ସେମାନେ ଗଛତଳେ ରହି ବର୍ଷାରେ ଭିଜିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ବର୍ଷା ଶେଷ ନ ହେଉଣୁ ସୂର୍ଯ୍ୟ ପଶ୍ଚିମ ଆକାଶରେ



ଅସ୍ତଗାମୀ ହେଲେ । ଚାରିଆଡ଼େ ଅନ୍ଧକାରମୟ ହୋଇଗଲା । ପ୍ରଫେସର ଓ ଜ୍ୟାକ୍ ଗଛ ମୂଳରୁ ବାହାରି ଏକ ବଡ଼ ପଥର ପାଖରେ ଆଶ୍ରୟ ନେଲେ ।

ବର୍ଷା ଅବିରାମ ଲାଗି ରହିଥାଏ । ଏହି ସ୍ଥାନଟି ଥିଲା ପାର୍କର ପାଚେରୀ ଘେରା ପରିବେଶଠାରୁ ଅନେକ ଦୂର ଘନ ଜଙ୍ଗଲ ମଧ୍ୟରେ । ପାଖାପାଖି ଯଦି କୌଣସି ହିଂସ୍ରଜନ୍ତୁ ଆକ୍ରମଣ କରନ୍ତି, ତା' ହେଲେ ପ୍ରାଣ ହରାଇବା ଛଡ଼ା ସେମାନଙ୍କର ଅନ୍ୟ ଗତି ନ ଥିଲା ।

ଜ୍ୟାକ୍ ଚାପାଗଳାରେ କହିଲା - ''ଅଙ୍କଲ୍, ମୁଁ ମୋ ମାଆଙ୍କ ପାଖକୁ ଫେରିବି କେମିତି ?''

ପ୍ରଫେସର ଜ୍ୟାକ୍‌କୁ ସାନ୍ତ୍ୱନା ଦେଇ କହିଲେ - ''ଭୟ କର ନାହିଁ । ଏହି ରାତିଟି ଶେଷ ହୋଇଗଲେ ସକାଳେ ଆମ୍ଭେ ନିଶ୍ଚୟ ଆମର ଗନ୍ତବ୍ୟ ସ୍ଥାନକୁ ଯାଇପାରିବା ।''

ଲିରା ନିକଟରୁ ଖବର ପାଇ ପାର୍କର ଜଣେ କର୍ମଚାରୀ ପ୍ରଫେସର ଓ ଜ୍ୟାକ୍‌କୁ ଖୋଜିବା ପାଇଁ ବାହାରିପଡ଼ିଲା । ବର୍ଷା ଓ ଅନ୍ଧକାର ରାତ୍ରିରେ ବର୍ଷାତି ପିନ୍ଧି ଓ ହାତରେ ଟର୍ଚ୍ଚଲାଇଟ୍ ଧରି ସେ ଚାରିଆଡ଼େ ସେମାନଙ୍କୁ ଅନ୍ୱେଷଣ କରିବାକୁ ଲାଗିଲା । ମଥା ଉପରେ ପ୍ରବଳ ବୃଷ୍ଟି, ପାଦତଳେ ପ୍ରଖର ପାଣିସ୍ରୋତ ଏବଂ ଚାରିପଟରେ ଭୟଙ୍କର ଜୀବମାନଙ୍କର ଚାଲବୁଲ କାହାରିକୁ ଖାତିର ନ କରି କର୍ମଚାରୀଜଣକ ଖୋଜି ଚାଲିଥାଏ ଜ୍ୟାକ୍ ଓ ପ୍ରଫେସରଙ୍କୁ । କିନ୍ତୁ ସେମାନଙ୍କୁ ପାଇବା ତା' ପକ୍ଷରେ ସମ୍ଭବ ହୋଇପାରିଲା ନାହିଁ ।

ଜ୍ୟାକ୍ ଓ ପ୍ରଫେସର ପଥରୁ ପାଖରେ ଠିଆ ହୋଇ ରାତିଟି କଟାଇଲେ । ସକାଳ ମୁକ୍ତ ଆଲୋକ ଭୂପୃଷ୍ଠରେ ପଡ଼ିବାକ୍ଷଣି ସେମାନେ ଉଦ୍ଦିଷ୍ଟସ୍ଥାନକୁ ମୁହାଁଇଲେ । କିନ୍ତୁ, ଏ ଯାତ୍ରା ମଧ୍ୟ ଶୁଭଙ୍କର ନ ଥିଲା ।

କିଛି ଦୂର ଯିବାପରେ ସେମାନେ କେତୋଟି ବ୍ରାକିଓସରାସ୍‌ମାନଙ୍କ ହାବୁଡ଼ରେ ପଡ଼ିଗଲେ । ଏଥର ଆଉ ରକ୍ଷା ନାହିଁ । ଜୀବନ ବିକଳରେ ଦିହେଁ ଦଉଡ଼ିବାକୁ ଲାଗିଲେ । କେଉଁ ଆଡ଼କୁ ଯିବେ କିଛି ଠିକ୍ କରି ପାରି ଡାଇନୋସରମାନଙ୍କର ବିପରୀତ ଦିଗକୁ ପ୍ରାଣ ବିକଳରେ ଦଉଡ଼ିବାକୁ ଆରମ୍ଭ କଲେ । କିନ୍ତୁ ସେହି ଜନ୍ତୁଗୁଡ଼ିକ ଲମ୍ଫ ପ୍ରଦାନ କରି ସେମାନଙ୍କ ଆଡ଼କୁ ଧାଇଁ ଆସୁଥିଲେ । ଏଗୁଡ଼ିକ ଏକ ଦଳବାନ୍ଧି ଦଉଡୁଥାନ୍ତି ।

କିଛି ଦୂରରେ ଏକ ବିଶାଳକାୟ ବୃକ୍ଷ ପତ୍ରଝଡ଼ା ଦେଇ ମାଟିରେ ପଡ଼ିଥାଏ । ପ୍ରଫେସର ଓ ଜ୍ୟାକ୍ ସେହି ବୃକ୍ଷର ମୋଟା ଗଣ୍ଡି ଆଢୁଆଳରେ ମୁଣ୍ଡ ପୋତି ବସିଗଲେ । ଯେଉଁଳି ଝଡ଼ବେଗରେ ଡାଇନୋସରମାନେ ଦଉଡୁଥିଲେ ଠିକ୍ ସେହି ଭାବରେ ଗଛର ଉପର ନେଇ ସେମାନେ ଲଂଫ ପ୍ରଦାନ କରିପଳାଇଲେ ।

ସେ ଦିହେଁ ଟିକିଏ ଆଶ୍ୱସ୍ତ ହେଲେ ଏବଂ ଜଙ୍ଗଲର କଡ଼େ କଡ଼େ ଆଗକୁ ଚାଲିବାକୁ ଲାଗିଲେ । ଯାଉ ଯାଉ ପ୍ରଫେସର ମନେ ମନେ ଚିନ୍ତା କଲେ, ଯେମିତି ହେଉ ଏହି ପାଚେରୀକୁ ପାର ହେବାକୁ ପଡ଼ିବ । ତା' ନ ହେଲେ ବାହାରିଯିବାକୁ ଅନ୍ୟ କୌଣସି ଉପାୟ ନାହିଁ ।

ପାଚେରୀର ଉପର ଅଂଶରେ ଦଶହଜାର ଭୋଲ୍‌ଟର ବିଦ୍ୟୁତ୍ ତାର ରହିଥିଲା । ଏହାକୁ ସ୍ପର୍ଶ କରି ପାଚେରୀ ଅତିକ୍ରମ କରିବା ସମ୍ଭବପର ନୁହେଁ । ତେବେ ଝଡ଼ବର୍ଷାପରେ ସେଥିରେ କରେଣ୍ଟ ଅଛି କି ନାହିଁ ତାହା ଜାଣିବା ପାଇଁ ପ୍ରଫେସର ଉପାୟ ଚିନ୍ତା କଲେ ।

ସେ ଜ୍ୟାକ୍‌କୁ ନିଜ ପାଖକୁ ଡାକିନେଇ କହିଲେ - ''ଦେଖ, ତୁମକୁ ପାଚେରୀ ଉପରକୁ ଉଠିବାକୁ ହେବ । ଏହାର ସବୁଠାରୁ ଉପରେ ଥିବା ବିଦ୍ୟୁତ୍ ତାରରେ କରେଣ୍ଟ ରହିବା କଥା । ତାହା ଅଛି କି ନାହିଁ, ଏହି ତାରକୁ ହାତରେ ଛୁଇଁ ଦେଖିବାକୁ ପଡ଼ିବ ।''

ଜ୍ୟାକ୍ ଭୟରେ କହିଲା - ''ଯଦି ସକ୍ ମାରେ ?''

ପ୍ରଫେସର କହିଲେ - ''ଭୟ କର ନାହିଁ, ଏଥିରେ କରେଣ୍ଟ ଥିଲେ ତାକୁ ଛୁଇଁବା ମାତ୍ରେ ତାହା ଝୁଙ୍କିଦେଇ ତୁମକୁ କେବଳ ପକାଇଦେବ । ମୁଁ ତଳେ ଛିଡ଼ା ହୋଇଛି, ତୁମକୁ ଧରିନେବି... ।''

ଜ୍ୟାକ୍ ମନରେ ଚାଞ୍ଚଲ୍ୟ ସୃଷ୍ଟି ହେଲା । ସେ ପାଚେରୀ ଉପରକୁ ଉଠିବାକୁ ଲାଗିଲା । ପ୍ରଫେସର ପାଚେରୀ ପାଖରେ ପ୍ରସ୍ତୁତ ହୋଇ ଛିଡ଼ା ହେଲେ ଏବଂ ଜାଣିଶୁଣି ବିପଦକୁ ହାତକୁ ନେଲେ ।

କିଛିକ୍ଷଣ ମଧ୍ୟରେ ଜ୍ୟାକ୍ ପାଚେରୀ ଉପରେ ପହଞ୍ଚିଗଲା । ତଳେ ଛିଡ଼ା ହୋଇ ପ୍ରଫେସର କହିଲେ, ଆସ୍ତେ କରି ତାରକୁ ଛୁଇଁ ଦେଖିନିଅ । ତାଙ୍କ ମୁହଁରୁ କଥା ନ ସରୁଣୁ ଜ୍ୟାକ୍ ଚିତ୍କାର କରି ତଳକୁ ଛିଟିକି ପଡ଼ିଲା ।

ପ୍ରଫେସର ପ୍ରସ୍ତୁତ ହୋଇଥିଲେ । ସେ ସୁନ୍ଦର ଭାବରେ ତାକୁ ଦି' ହାତରେ ଧରିନେଲେ ଏବଂ ଅଚେତ ହୋଇଯାଇଥିବା ଜ୍ୟାକ୍‌କୁ ତଳେ ଶୁଆଇ ଦେଲେ ।

ଯେଉଁ କଥା ଚିନ୍ତା କରୁଥିଲେ ତାହା ହିଁ ହୋଇଗଲା । ଆକସ୍ମିକ ସକ୍ ପାଇ ତା'ର ଶ୍ୱାସକ୍ରିୟା ବନ୍ଦ ହୋଇଯାଇଛି । ସଯତ୍ନରେ ସେ ଜ୍ୟାକ୍‌ର ମୁହଁରେ ମୁହଁ ଲଗାଇ ଫୁସ୍‌ଫୁସ୍‌ରେ ପବନ ପୂରାଇବାକୁ ଲାଗିଲେ ଏବଂ ପରକ୍ଷଣରେ ସେହି ପବନକୁ ତା' ଦେହରୁ ପୁଣି ମୁହଁ ସାହାଯ୍ୟରେ ଟାଣିଆଣିଲେ । ଏହିଭଳି ଶ୍ୱାସକ୍ରିୟା କରି ଚାଲିବାର କିଛିକ୍ଷଣ ମଧ୍ୟରେ ଜ୍ୟାକ୍‌ର ଫୁସ୍‌ଫୁସ୍ ସକ୍ରିୟ ହୋଇଉଠିଲା । ସେ ଆଖି ଖୋଲି ଅନାଇଲା । ପ୍ରଫେସର ମୁହଁରେ ସାନ୍ତ୍ୱନାର ହସ ଫୁଟି ଉଠିଲା ।

ତା' ପରେ ପୁଣି ସେମାନେ ଚାଲିବାକୁ ଆରମ୍ଭ କଲେ । ଜଙ୍ଗଲ ଭିତରେ କେଉଁଠି ପ୍ରଧାନ ଫାଟକ ତାହା ଜାଣିପାରୁ ନ ଥାନ୍ତି । କାରଣ ଏହା ପୂର୍ବରୁ ସେମାନେ ଏହା ଭିତରେ ପଶିବା ଆବଶ୍ୟକ ନ ଥିଲା । ପ୍ରଫେସର ଗଳ୍ପ କହି କହି ଜ୍ୟାକ୍‌ଙ୍କ ସହିତ ଚାଲିଥାନ୍ତି ।

ଲିଭା ସକାଳର ସୂର୍ଯ୍ୟରଶ୍ମିକୁ ଚାହିଁ ରହିଥାନ୍ତି । ଚାରିଆଡ଼େ ସତେଜ ଆଲୋକ ପଡ଼ିବାମାତ୍ରକେ ସେ ସ୍ୱୟଂଚାଳିତ ଗାଡ଼ିନେଇ ପାର୍କ ଭିତରକୁ ପ୍ରବେଶ କଲେ । ସୌଭାଗ୍ୟବଶତଃ ମୁଖ୍ୟଫାଟକ ପାଖରୁ କିଛି ଦୂର ଗଲାପରେ ଦେଖିବାକୁ ପାଇଲେ - ଗୋଟିଏ ଗଛ ତଳେ ଛିଡ଼ା ହୋଇ ପ୍ରଫେସର ଜ୍ୟାକ୍‌କୁ କ'ଣ ବୁଝାଇ ଚାଲିଥାନ୍ତି ।

ଲିରା ଗାଡ଼ି ରଖି ଚିତ୍କାର କରି ଉଠିଲେ । ଆନନ୍ଦରେ ଦଉଡ଼ିଯାଇ ଜ୍ୟାକ୍‌କୁ କୁଣ୍ଢାଇ ଧରିଲେ । ପ୍ରଫେସର ଲିରାକୁ କହିଲେ - ''ଜ୍ୟାକ୍ ଅନେକ କଷ୍ଟ ପାଇଛି, ତେଣୁ କିଛି ଦିନ ପାଇଁ ସମ୍ପୂର୍ଣ୍ଣ ବିଶ୍ରାମରେ ତାକୁ ରଖିବାକୁ ହେବ... । ଚାଲ ଆମେ ଫେରିଯିବା ।''

## ଜୁରାସିକ୍ ପାର୍କର ଅନ୍ତିମ ପରିଣତି :

ମିଉଜିୟମ୍‌ର କ୍ୱାର୍ଟର ଭିତରେ ଏବେ ଅଛନ୍ତି ଲିରା ଓ ତାଙ୍କର ଦୁଇଜଣ ପିଲା । ବାବା ଡଃ ରିଚମଣ୍ଡ ତାଙ୍କର ସହକର୍ମୀମାନଙ୍କୁ ନେଇ ମୁଖ୍ୟ କାର୍ଯ୍ୟାଳୟରେ ରହିଛନ୍ତି ।

ଦିନେ ସକାଳେ ଡାଇନିଂ ରୁମ୍‌ରେ ବସି ଲିରା ଓ ପ୍ରଫେସର ଆଳାପ ଆଲୋଚନାରେ ବ୍ୟସ୍ତ ଥାନ୍ତି । ଏହି ସୁବିଧା ଦେଖି ଦୁଇ ଭାଇଭଉଣୀ ଜଳଖିଆ ଖାଇସାରି ଲୁଚି କରି ମିଉଜିୟମ୍ ଭିତରକୁ ପଶିଲେ । ଝରକା ପାଖରେ ଛିଡ଼ା ହୋଇ ଜଙ୍ଗଲ ଭିତରକୁ ଅନାଇଲେ ଡାଇନୋରସରମାନଙ୍କର ଗତିବିଧି ଜଣାପଡ଼େ ।

ଜ୍ୟାକ୍ ଓ କେଲି ଦିହେଁ ପାଖାପାଖି ଛିଡ଼ା ହୋଇ ଜଙ୍ଗଲ ଆଡ଼କୁ ଅନାଇଥାନ୍ତି । କିନ୍ତୁ ସେମାନେ ହଲ୍ ଭିତରକୁ ପଶିବାବେଳେ ପ୍ରବେଶ ଦ୍ୱାର ବନ୍ଦ କରିବାକୁ ଭୁଲି ଯାଇଥିଲେ ।

କେତେବେଳ ଯେ ଦିଓଟି ଟିରାନୋସରସ୍ ଖୋଲା ପ୍ରବେଶଦ୍ୱାର ଦେଇ ହଲ୍ ଭିତରକୁ ପଶିଆସିଛନ୍ତି, ସେମାନେ ଜାଣି ପାରି ନ ଥିଲେ ।

ହଲ୍ ଭିତରେ ଥିବା ଟେବୁଲ ଉପରେ ଶବ୍ଦ ହେବାରୁ ଜ୍ୟାକ୍ ପଛକୁ ଚାହିଁ ଡାଇନୋସରମାନଙ୍କୁ ଦେଖି ଆର୍ତ୍ତ ଚିତ୍କାର କରିଉଠିଲା । ଭଉଣୀ ଜେଲି ମଧ୍ୟ ଭୟଭୀତ ହୋଇପଡ଼ିଲା । ସେମାନେ ହଲ ଭିତରେ ଦଉଡ଼ିବାକୁ ଲାଗିଲେ । ଡାଇନୋସର ଦିଓଟି ଶିକାର ଲୋଭରେ ସେମାନଙ୍କ ପଛରେ ଧାଇଁଲେ । ହଲ୍ ଭିତରେ ଥିବା ସମସ୍ତ ଆସବାବପତ୍ର ତଥା ବିଭିନ୍ନ ବୈଜ୍ଞାନିକ ଯନ୍ତ୍ରପାତିଗୁଡ଼ିକ ସେମାନଙ୍କର ଦେହ ଲାଗି ତଳେ ପଡ଼ିଯାଇ ଧ୍ୱଂସ ହେବାକୁ ଲାଗିଲା ।

ଭୀତସଂତ୍ରସ୍ତ ଜ୍ୟାକ୍ ଓ ଜେଲି ବିଭିନ୍ନ ଆସବାସ ଆଢୁଆଳରେ ଲୁଚି ଲୁଚି ଜନ୍ତୁମାନଙ୍କଠାରୁ ଦୂରରେ ରହୁଥାନ୍ତି । କିନ୍ତୁ ସେମାନେ ଯେଉଁଆଡ଼େ ଧାଉଁଥାନ୍ତି, ଡାଇନୋସରମାନେ ସେମାନଙ୍କୁ ସେହିଆଡ଼େ ପିଛା କରୁଥାନ୍ତି ।

ମନୁଷ୍ୟ ଓ ଡାଇନୋସରମାନଙ୍କ ମଧ୍ୟରେ ଏହିଭଳି ଝକାପଞ୍ଝା ଖେଳ ବହୁତ ସମୟ ଚାଲିଲା । ଏହାରି ଭିତରେ ଜେଲି ସୁବିଧା ଦେଖି ଖୋଲା ପ୍ରବେଶଦ୍ୱାର ଦେଇ ବାହାରକୁ ଦଉଡ଼ି ପଳାଇଯାଇ ତା' ମାଆଙ୍କ ନିକଟରେ ପହଞ୍ଚିଲା । ଜ୍ୟାକ୍ ବର୍ତ୍ତମାନ ଏକା । ତା' ପଛରେ ଦୁଇଟି ଡାଇନୋସର ଆକ୍ରମଣ କରିବାରେ ଲାଗିଛନ୍ତି ।

ଘଟଣାଟା କିନ୍ତୁ ହଠାତ୍ ଏକ ଭିନ୍ନ ରୂପ ନେଲା । ଏହି ସମୟରେ ସେହି ହଲ୍ ଭିତରକୁ ଦଳେ ଭୋକିଲା ଭ୍ୟାଲୋସିର୍ୟାପଟ ପଶିଆସିଲେ । ପଶିଆସିଲାକ୍ଷଣି ସେମାନେ ଟିରାନୋସରାସ୍‌ମାନଙ୍କୁ ଦେଖିଦେଲେ । ଏକ ଦୁଇଟିଯାକ ହିଂସ୍ରଦଳ ପରସ୍ପରକୁ ଆକ୍ରମଣ କରିବାକୁ ଲାଗିଲେ । ଦେଖୁ ଦେଖୁ ଘମାଘୋଟ ଲଢ଼େଇ ଲାଗିଗଲା । ଏମିତି ଚାଲିଥିଲାବେଳେ ହଠାତ୍ ଦୁଇ ତିନିଟି ଭ୍ୟାଲୋ ଏକତ୍ର ଝାଂପିପଡ଼ିଲେ ଟିରାନୋସରାସ୍‌ର ଘେରକୁ, ଗୋଟିକୁ ଆକ୍ରମଣ କରି ଧରାଶୟୀ କରିନେଲେ, ଅନ୍ୟଟିକୁ କାମୁଡ଼ି କ୍ଷତବିକ୍ଷତ କରିଦେଲେ । ଅଳ୍ପ ମୁହୂର୍ତ୍ତରେ ଆକ୍ରମଣରେ ବ୍ୟତିବ୍ୟସ୍ତ ହୋଇପଡ଼ିଲେ ଅତିକାୟ ଦାନବ ଦୁଇଟି । ଇତିମଧ୍ୟରେ ଖୋଲା ଦରଜା ଦେଇ କ୍ରମଶଃ ଭ୍ୟାଲୋସିର୍ୟାପଟମାନଙ୍କର ସଂଖ୍ୟା ବଢ଼ିବାକୁ ଲାଗିଲା ।

ଜେଲି ପାଖରୁ ଖବର ପାଇ ପ୍ରଫେସର ଓ ଲିରା ମିଉଜିୟମ ପାଖକୁ ଧାଇଁ ଆସିଲେ । ସେମାନେ ସେଠାକୁ ଆସି ଦେଖିଲେ ଯେ-ଜ୍ୟାକ୍ ସୁଇଚ୍‌ବୋର୍ଡ଼ ନିକଟରେ ବସି ଗୋଟିଏ ପରେ ଗୋଟିଏ ବୋତାମ ଟିପିଚାଲିଛି । ତା'ଠାରୁ ଅଳ୍ପ କେତେଦୂରରେ ହଲ ଭିତରେ ଡାଇନୋସରମାନଙ୍କର ମଧ୍ୟରେ ଭୀଷଣ ଯୁଦ୍ଧ ଲାଗିରହିଛି । ଯାହା ହେଉ ସେମାନେ କେହି ଜ୍ୟାକ୍‌କୁ ଦେଖି ପାରିନାହାନ୍ତି । ସେ ଲୁଚି କରି ବସିଛି ।

ଲିରା ଜ୍ୟାକ୍ ପାଖକୁ ଦଉଡ଼ିଯାଇ ତା' ପାଖରେ ଠିଆ ହୋଇଗଲେ । ଜ୍ୟାକ୍ ତା' ମା'କୁ ପାଖରେ ପାଇ କହିଲା - "ଶୀଘ୍ର ଅଜାଙ୍କୁ ଖବର ଦିଅ । ଏହି ଦେଖ, ଜଙ୍ଗଲ ଭିତରୁ ସବୁ ଡାଇନୋସରମାନେ କିଭଳି ଦଳଦଳ ହୋଇ ଏଠାକୁ ମାଡ଼ି ଆସୁଛନ୍ତି ।" ଲିରା କାଚଥିବା ଝରକାଦେଇ ଦୂରରୁ ଦେଖିଲେ -

ଏକ ବିଶାଳକାୟ ଟିରାନୋସରାସ୍ ଗର୍ଜନ କରି ଅନ୍ୟ ଏକ ବ୍ରାକିଓସରକୁ ଆକ୍ରମଣ କରୁଛି । ସେହିମାନଙ୍କ ନିକଟକୁ ଧାଇଁ ଆସୁଛି ଆଉ ଗୋଟିଏ ଟିରାନୋସରାସ୍ । ଏହିକ୍ଷଣି ଶିକାର ପାଇଁ ଆରମ୍ଭ ହେବ ଦୁଇ ପ୍ରତିଦ୍ୱନ୍ଦୀଙ୍କ ମଧ୍ୟରେ ତୁମୁଳ ଲଢ଼େଇ ।

ଲିରା ଆତଙ୍କରେ ସୁଇଚ୍‌ବୋର୍ଡ଼ର ଗୋଟିଏ ବୋତାମ୍ ଚାପି ରଖିଲେ । ଏହା ଫଳରେ ମୁଖ୍ୟ କାର୍ଯ୍ୟାଳୟର ସଂକେତ ଥିବା ସୁଇଚ୍‌ବୋର୍ଡ଼ର ଆଲୁଅ ଜଳି ଉଠିଲା । ଲିରା କହିଲେ - ''ଏଥର ଚାଲ ଆମ୍ଭେମାନେ ବାହାରକୁ ଚାଲିଯିବା । କିଛି କ୍ଷଣ ମଧ୍ୟରେ ତୁମ ଅଜାଙ୍କ ଲୋକମାନେ ଆସି ଆମକୁ ଏଠାରୁ ନେଇ ଚାଲିଯିବେ ।''

ପ୍ରଫେସର ଜେଲିକୁ ଏବଂ ଲିରା ଜ୍ୟାକ୍‌କୁ ଧରି ଖୋଲାଦରଜା ରାସ୍ତା ଦେଇ ମିଉଜିୟମ୍‌ରୁ ବାହାରିପଡ଼ିଲେ ।

ଅନ୍ୟ ପକ୍ଷରେ ହଲ ଭିତରେ ଥିବା କ୍ଷତବିକ୍ଷତ ଦୁଇଟି ଟିରାନୋସରାସ୍ ଅନ୍ଧ ହୋଇ ଘୁରି ବୁଲୁଥାନ୍ତି, କିନ୍ତୁ ବାହାରି ଆସିବାର ରାହା ଖୋଜି ପାଇପାରୁ ନାହାନ୍ତି ।

ଅତି ତରବର ଭାବେ ଜନ୍ ହାରଲ୍‌ଡ଼ ଓ ଡଃ ରିଚମଣ୍ଡ ପିଲା ଦିହିଁଙ୍କୁ ତଥା ଅନ୍ୟମାନଙ୍କୁ ନେଇ ହେଲିକେପ୍ଟର ଆରୋହଣ କଲେ । ଯାନଟି ଆକାଶକୁ ଉଠି ଘେରାଏ ଘୂରି ଆସିଲା ଜୁରାସିକ୍ ପାର୍କ ଉପରେ । ତଳେ ଚାଲିଥିଲା ଡାଇନୋସରମାନଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ । ସତେ ଯେପରି କାଦମ୍ବରୀ ନିଶାରେ ବିଭୋର ଯଦୁବଂଶୀମାନେ ପରସ୍ପରକୁ ଧ୍ୱଂସ କରିବାରେ ଲାଗିଛନ୍ତି ।


ଅନ୍ୟତମ ଡାକବିଲ ଡାଇନୋସର ହେଉଛି ପ୍ୟାରାସୋରୋଲୋଫାସ ବା ଲ୍ୟାସବିଓସର । ଅଣ୍ଡା ଫୁଟାଇ ଶାବକ ଡାଇନୋସରମାନେ ବାହାରି ଆସୁଛନ୍ତି ।

ଡଃ ରିଚମଣ୍ଡଙ୍କ ଚକ୍ଷୁ ସଜଳ ହୋଇଉଠିଲା । ଆଖି ଆଗରେ ସେ ଦେଖୁଥିଲେ ତାଙ୍କ ଅଜସ୍ର ଶ୍ରମ, ମେଧା ଓ ସମୟ ବିନିମୟରେ ଗଢ଼ିଥିବା ସ୍ୱପ୍ନର 'ଜୁରାସିକ୍ ପାର୍କ'ର ବିଲୟ... ।

●

# ତୃତୀୟ ଅଧ୍ୟାୟ

## ଜୁରାସିକ୍ ଦ୍ୱୀପ : ଏକ ନୂତନ କାହାଣୀର ପରିକଳ୍ପନା

ଚଳଚ୍ଚିତ୍ରର କାହାଣୀରେ ବର୍ଣ୍ଣିତ ଜୁରାସିକ୍ ପାର୍କର ପରିବେଶ ଥିଲା କୃତ୍ରିମ । ତେବେ, ପ୍ରାକୃତିକ ପରିବେଶ ମଧ୍ୟରେ ଯଦି ସେହିଯୁଗର କିଛି ଅଂଶ ଅପରିବର୍ତ୍ତିତ ରହିଯାଇଥାନ୍ତା, ତା'ର ରୂପରେଖ କିପରି ହୋଇଥାନ୍ତା ? ଏ ପ୍ରଶ୍ନ ହୁଏତ ଅନେକ କଳ୍ପନା ରାଜ୍ୟକୁ ଆନ୍ଦୋଳିତ କରୁଥିବ । ତାହାକୁ ନେଇ ଏଠାରେ ଉପସ୍ଥାପିତ କରାଗଲା ଆଉ ଏକ କାଳ୍ପନିକ କାହାଣୀ ।

ଜୁରାସିକ ଦ୍ୱୀପ ଅଭିମୁଖେ ଅଭିଯାତ୍ରୀ ଦଳ :

ସୀମାହୀନ ସାଗରର ନୀଳ ଜଳରାଶି ଉପର ଦେଇ ଜୁରାସିକ୍ ଜାହାଜଟି ଢେଉ କାଟି ହଲି ହଲି ଆଗେଇ ଚାଲିଛି । ତିନୋଟି 'ସି ଗାଲ' ପକ୍ଷୀ ବହୁତ ସମୟଧରି ଜାହାଜର ମଥା ଉପର ଆକାଶରେ ଉଡୁଥିଲେ । ହଠାତ୍ ସେମାନେ ଅସ୍ପଷ୍ଟ ରାବ ଦେଇ ବିପରୀତ ଦିଗକୁ ଉଡ଼ିଗଲେ ଏବଂ ପୁଣି ଜଳରାଶିର ଅତି ନିକଟକୁ ଆସି ଜାହାଜକୁ ଅନୁସରଣ କରିବାକୁ ଲାଗିଲେ ।

ଅସୀମ ଜଳରାଶି ଭିତରେ ଦିଗ ନିର୍ଣ୍ଣୟ କରିବାର ଲକ୍ଷ୍ୟ ନେଇ ଡକ୍ ଉପରେ ବସିଥାନ୍ତି ଅଭିଯାତ୍ରୀ ଦଳର ନେତା ପ୍ରଫେସର ଡେନ୍‌ହୋମ୍ । ତାଙ୍କ ସହିତ ରବିନ୍‌ସନ ଓ କ୍ୟାପ୍‌ଟେନ୍ ଇଙ୍ଗଲଉର୍ଡ଼ । ନୀରବତାର ଅବସାନ ଘଟାଇ ଇଙ୍ଗଲଉର୍ଡ଼ କହିଲେ - "ପ୍ରଫେସର ସାହେବ, ମୁଁ ବର୍ତ୍ତମାନ ପର୍ଯ୍ୟନ୍ତ ବୁଝିପାରୁନି ଏକ ଉଡ଼ନ୍ତା ପକ୍ଷୀ ଉପରେ ଭରସା କରି ଆମର ଏତେବାଟ ଆସିବା କ'ଣ ଠିକ୍ ହେଲା ?"

ପ୍ରଫେସର କହିଲେ - "ଆପଣ କାହିଁକି ଅଯଥାରେ ଉଦ୍‌ବିଗ୍ନ ହେଉଛନ୍ତି କ୍ୟାପ୍‌ଟେନ୍ । ସେହିଟା ଆଦୌ ଉଡ଼ାଖବର ନୁହେଁ, ମୁଁ ଯାହାପାଖରୁ ଏହାର ସର୍ବଶେଷ ସୂଚନା ପାଇଛି ସେ ହେଉଛନ୍ତି ଜଣେ ଅଭିଜ୍ଞ ବୃଦ୍ଧ କ୍ୟାପ୍‌ଟେନ୍ । ଏହି ଚୀନ ସାଗରରେ ଭାସମାନ୍ ଜାହାଜ ଉପରେ ରହି ସେ ଏକ ତମସା ପାହାଡ଼ ଥିବା ଦ୍ୱୀପର ଆକାଶଚୁମ୍ବୀ ପାଚେରୀ ଦେଖିବାକୁ ପାଇଥିଲେ । କ୍ୟାପ୍‌ଟେନ୍‌ଙ୍କର ଅଭିଯାନ ବିବରଣୀ ସହିତ ମୋ ଦ୍ୱାରା ପୂର୍ବରୁ ସଂଗୃହୀତ ତଥ୍ୟ ମିଶିଯାଇ ମୋର ବିଶ୍ୱାସକୁ ଆହୁରି ଦୃଢ଼ୀଭୂତ କରିଦେଉଛି । ଏ ବିଷୟରେ ମୁଁ ନିଶ୍ଚିତ ଯେ ଯଦି ସେହି ଦ୍ୱୀପରେ ପଦାର୍ପଣ କରିପାରୁ, ତେବେ ପ୍ରକୃତରେ ସଭ୍ୟ ମନୁଷ୍ୟ ସମାଜର ବିଶ୍ୱାସଯୋଗ୍ୟ ଅନେକ ରହସ୍ୟ ଉଦ୍‌ଘାଟନ କରିବାକୁ ଆମେ ସକ୍ଷମ ହୋଇପାରିବା ।"

ପ୍ରାୟ ଦଶବର୍ଷ ତଳେ ସୁନାମଧନ୍ୟ ଗବେଷଣା ପତ୍ରିକା 'ନେଚର'ରେ ଜନୈକ ଭେଷଜ ବିଜ୍ଞାନୀଙ୍କର ନିବନ୍ଧଟିଏ ପ୍ରକାଶିତ ହୋଇଥିଲା। ସେଥିରେ ସୂଚିତ ହୋଇଥିଲା ତମସା ପାହାଡ଼ ସମ୍ପର୍କରେ ତାଙ୍କର ପ୍ରତ୍ୟକ୍ଷ ଅନୁଭୂତି। ଥରେ ସେ ସମୁଦ୍ରରେ ଯାତ୍ରା କରୁ କରୁ ସେଠାରେ ପହଞ୍ଚି ଯାଇଥିଲେ ଏବଂ ସେଠାରେ ସ୍ଥାନୀୟ ଅର୍ଦ୍ଧଲଗ୍ନ ଅଧିବାସୀଙ୍କଠାରୁ ଗୋପନରେ କିଛିଦିନ ଅତିବାହିତ କରିପାରିଥିଲେ। ସେଠାରେ ପଥର ଉପରେ ପଥର ଲଦାହୋଇ ନିର୍ମିତ ହୋଇଥିବା ଏକ ସୁଉଚ୍ଚ ପ୍ରାଚୀର ଦ୍ୱାରା ବେଷ୍ଟିତ ବିଶାଳ ବନଭୂମି ତାଙ୍କର ଦୃଷ୍ଟିଗୋଚର ହୋଇଥିଲା। କିନ୍ତୁ ଭିତରେ ଯେ କ'ଣ ଅଛି ଏବଂ କାହିଁକି ଏହା ନିର୍ମିତ କରାଯାଇଛି, ସେସବୁର ରହସ୍ୟ ଭେଦ କରିବା ତାଙ୍କ ପକ୍ଷେ ସମ୍ଭବ ହୋଇ ନଥିଲା। ତେବେ ଏ ବିଷୟରେ ତାଙ୍କର ଅନୁମାନ ବେଶ୍ ଯୁକ୍ତିସମ୍ମତ। ସମ୍ଭବତଃ ଜଙ୍ଗଲୀ ଜୀବଜନ୍ତୁମାନଙ୍କ ତୁଳନାରେ ଖୁବ୍ ଶକ୍ତିଶାଳୀ ଓ ଭୟଙ୍କର ଅନ୍ୟ କୌଣସି ପ୍ରାଣୀମାନଙ୍କ କବଳରୁ ଜନବସତିକୁ ରକ୍ଷା କରିବା ପାଇଁ ସେହି ଆକାଶଚୁମ୍ବୀ ପ୍ରାଚୀର ନିର୍ମାଣ କରିବା ଦରକାର ପଡ଼ିଥିଲା।

ମୋ ସହିତ ସାକ୍ଷାତ ହୋଇଥିବା ଚୀନ ଦେଶୀୟ ବୃଦ୍ଧ କ୍ୟାପ୍ଟେନ୍ ତାଙ୍କଠାରୁ ଏ ଖବର ପାଇ ବହୁ କଷ୍ଟରେ ଖୋଜି ଖୋଜି ତମସା ପାହାଡ଼ ଦ୍ୱୀପରେ ପହଞ୍ଚିଲେ। ସୌଭାଗ୍ୟବଶତଃ ସେହି ସମୟରେ ସେଠାର ଅଧିବାସୀମାନଙ୍କର ଏକ ଉତ୍ସବ ଲାଗିଥାଏ। ଜଙ୍ଗଲ ଆଡୁଆଳରେ ରହି ସେ ଦେଖିବାକୁ ପାଇଲେ ଯେ, ଫୁଲମାଳରେ ସଜ୍ଜିତ କରାଇ ଗୋଟିଏ ଯୁବତୀକୁ ନୃତ୍ୟ ବାଜଣାରେ ନେଇ ସେହି ବିରାଟ ପ୍ରାଚୀରର ଫାଟକ ଖୋଲି ତା' ଭିତରକୁ ଠେଲି ଦିଆଗଲା। କିଛି କ୍ଷଣପରେ ଏକ ଭୟଙ୍କର ଜନ୍ତୁର ଗର୍ଜନରେ ସମଗ୍ର ଦ୍ୱୀପଭୂମି କମ୍ପି ଉଠିଲା।

ବୃଦ୍ଧ କ୍ୟାପ୍ଟେନ୍ ଯେଉଁ ସମୟରେ ଏହି ଉତ୍ସବଟି ଅନୁଷ୍ଠିତ ହେବା କଥା କହୁଥିଲେ ବର୍ତ୍ତମାନ ହେଉଛି ସେହି ସମୟ। ଏଣୁ ଯଦି ଭାଗ୍ୟରେ ଥାଏ, ଆମ୍ଭେ ମଧ୍ୟ ଏହାକୁ ଉପଭୋଗ କରିପାରିବା...।

ଭଗ୍ନ ମନୋରଥ ଓ ଶୂନ୍ୟଦୃଷ୍ଟିରେ ସୀମାହୀନ ସାଗରର ଜଳରାଶି ଉପରେ ନିମଗ୍ନ ରହି ଏକମନରେ ପ୍ରଫେସରଙ୍କ ବିବରଣୀ ଶୁଣି ଯାଉଥିଲେ କ୍ୟାପ୍ଟେନ୍। ସହସା ଅଳସତା ଭଙ୍ଗ କରି ସଜାଗ ହୋଇ କହି ଉଠିଲେ - "ପ୍ରକୃତରେ ଏକ କାଳ୍ପନିକ ଗଳ୍ପ ଭଳି ଏହା ରୋମାଞ୍ଚକର...। ଏହା ସତ୍ୟ ହୋଇଥିଲେ ଆମ ପାଇଁ ଅପେକ୍ଷା କରି ରହିଛି ସେଇ ତମସା ପାହାଡ଼ ଦ୍ୱୀପରେ ଥିବା ଅନେକ ଅନେକ ଭୟଙ୍କର ରହସ୍ୟ। ଏ ରହସ୍ୟ ଯେତେ ଭୟଙ୍କର ହେଲେ ବି ଆମକୁ ତାହା ଉଦ୍‌ଘାଟନ କରିବାକୁ ପଡ଼ିବ। ସେଥିପାଇଁ ସବୁପ୍ରକାର ଅଜଣା ବିପଦ ଆପଦକୁ ମୁକାବିଲା କରିବାରେ ସାଧନ ସବୁ ଆମ ଜାହାଜରେ ରହିଛି।"

ଚୁପ୍‌ଚାପ୍ ବହୁତ ସମୟଧରି ବସି ବସି ପ୍ରଫେସର ଆଉ କ୍ୟାପ୍ଟେନ୍‌ଙ୍କର କଥା ଶୁଣୁଥିଲେ ରବିନ୍‌ସନ୍। ସେ ମୁହଁ ଫେରାଇ ପଚାରିଲେ - "ସେହି ଚୀନା କ୍ୟାପ୍ଟେନ୍ କ'ଣ ଆପଣଙ୍କୁ ସଠିକ୍ ତଥ୍ୟ ଦେବାକୁ ସକ୍ଷମ ହୋଇଥିଲେ ?"

ପ୍ରଫେସର କହିଲେ - "ନା..., ତେବେ ସେହି ପ୍ରଚଣ୍ଡ ଗର୍ଜନ ପଛରେ ଏକ ଭୟଙ୍କର ପ୍ରାଣୀର ଅବସ୍ଥିତିର ସୂଚନା ସେ ପାଇଥିଲେ। ସେଭଳି କୌଣସି ପ୍ରାଣୀର ଅସ୍ତିତ୍ୱ ସମ୍ପର୍କରେ ଏ

ଯୁଗରେ ଆମ୍ଭମାନଙ୍କୁ ଅଜ୍ଞାତ । ତାହାର ସନ୍ଧାନ ପାଇଁ ହିଁ ଆମ୍ଭମାନଙ୍କ ଏହି ଅଭିଯାନ.... । ଯାତ୍ରା ପ୍ରାରମ୍ଭରେ ମୁଁ ଆପଣମାନଙ୍କୁ ଏସବୁ କଥା ଜଣାଇଥିଲି ଯେ ଅଜ୍ଞାତ ଦ୍ୱୀପରେ ଅଜଣା କିଛି ସନ୍ଧାନ କରିବାର ଉଦ୍ଦେଶ୍ୟ ନେଇ ଆମ୍ଭେମାନେ ବାହାରିବୁ ବୋଲି... ।''

ଉଲ୍ଲାସଭରା କଣ୍ଠରେ ରବିନ୍‌ସନ୍ କହିଲେ - ''ବିଂଶ ଶତାବ୍ଦୀର ଏହି ବିଜ୍ଞାନ ଯୁଗରେ ମନୁଷ୍ୟ ସମ୍ମୁଖରେ ଯଦି ଆମେ କୌଣସି ଅଜ୍ଞାତ ଅତିକାୟ ପ୍ରାଣୀର ଅସ୍ତିତ୍ୱର ସୂଚନା ପହଞ୍ଚାଇ ଦେବାକୁ ସକ୍ଷମ ହୋଇପାରିବା, ତାହାହେଲେ ତାହାହେବ ବର୍ତ୍ତମାନର ପୃଥିବୀର ସର୍ବଶ୍ରେଷ୍ଠ ବିସ୍ମୟକର ଘଟଣା । ଏହା ନେଇ ମୁଁ ଆଶାବାଦୀ ପ୍ରଫେସର... ।''

ତାଙ୍କୁ ଧନ୍ୟବାଦ ଜଣାଇ ପ୍ରଫେସର ପୁଣି କହିବାକୁ ଲାଗିଲେ - ''ମୁଁ ମଧ୍ୟ ବିଶ୍ୱାସ କରେ ଯେ, ଏ ପର୍ଯ୍ୟନ୍ତ ତମସା ପାହାଡ଼ ଦ୍ୱୀପର ଅଜ୍ଞାତ ଭୟଙ୍କର ସେହି ରହସ୍ୟ ନିଶ୍ଚିତ ଭାବରେ ଆମ ଦ୍ୱାରା ଉଦ୍‌ଘାଟିତ ହେବ । ପୃଥିବୀରେ ମାତ୍ର ୧୦ ଲକ୍ଷ ବର୍ଷର ଆୟୁ ହେଉଛି ଏହି ମନୁଷ୍ୟର । ଆଉ ତିନିଶହ କୋଟି ବର୍ଷର ପୁରୁଣା ଏହି ପୃଥିବୀର ଛାତିରେ ଷାଠିଏ କୋଟି ବର୍ଷର ଜୀବଜଗତ ମଧ୍ୟରେ ବହୁ ବିବର୍ତ୍ତନ ଘଟିଯାଇଛି । ଶିକ୍ଷିତ ମନୁଷ୍ୟ ସମାଜ ଦ୍ୱାରା ତା'ର ଅଳ୍ପ କେତୋଟି ରହସ୍ୟ ଘଟଣା ମାତ୍ର ଉନ୍ମୋଚନ କରାଯାଇଛି । ତେଣୁ ଏଭଳି ଏକ ଅଜ୍ଞାତ ଇତିହାସର ଲୁକ୍‌କାୟିତ ଛବି ଆମ୍ଭେ ଯଦି ଉନ୍ମୋଚନ କରିପାରୁ, ତା'ହେଲେ ଆମ୍ଭପ୍ରତି ଭାଗ୍ୟଦେବୀ ସୁପ୍ରସନ୍ନା ବୋଲି ଜାଣିବାକୁ ପଡ଼ିବ ।''

କଥା ଶେଷ କରି ପ୍ରଫେସର ପକେଟରୁ ଦିଗ ନିର୍ଣ୍ଣୟକ ଯନ୍ତ୍ର ବାହାର କରି ଆଖି ସାମନାରେ ଧରିଲେ । ତା'ପରେ କ୍ୟାପ୍‌ଟେନ୍‌ଙ୍କ ଆଡ଼କୁ ଅନାଇ ହସ ହସ ବଦନରେ କହିଲେ - ''ଆମର ରାସ୍ତା ପ୍ରାୟ ଶେଷ ହୋଇଗଲାଣି । ମୁଁ ଆଶା କରୁଛି ଦିନ ଶେଷ ହେବା ପୂର୍ବରୁ ଆମ୍ଭେମାନେ ସେହି ଦ୍ୱୀପର ସଂକେତ ପାଇଯିବୁ ।''

ପ୍ରଫେସରଙ୍କ କଥା ଶେଷ ନ ହେଉଣୁ ଗୋଟାଏ ଖୋଲା କ୍ୟାମେରା ଧରି ପ୍ରସ୍ତୁତ ହୋଇଗଲା ଜୁମିନା । ଜୁମିନା ରବିନ୍‌ସନ୍‌ଙ୍କର ସ୍ତ୍ରୀ । ସେ ଅତିମାତ୍ରାରେ ଦୁଃସାହସିକା । ତେଣୁ ସ୍ୱାମୀଙ୍କ ସାଙ୍ଗରେ ତାଙ୍କର ଏହି ଅଭିଯାନର ସେ ମଧ୍ୟ ଜଣେ ଅଭିଯାତ୍ରୀ ହୋଇଛି । ଫଟୋ ଉଠାଇବାରେ ଜୁମିନାର



ବହୁତ ସଉକ। ସାଗରଯାତ୍ରା ଆରମ୍ଭଠାରୁ ଛବି ଉଠାଇବାରେ ତା'ର ବିରାମ ନାହିଁ। କିନ୍ତୁ ଗତ କେତେ ଦିନ ଧରି ଜଳ ଆଉ ଜଳ ମଧ୍ୟରେ ଯାଇ ସ୍ଥଳର ସନ୍ଧାନ ପାଇବା ପାଇଁ ସେ ଖୁବ୍ ବ୍ୟାକୁଳ ହେଉଥାଏ। ଆକାଶ ଓ ସୀମାହୀନ ଜଳରାଶି ମଝିରେ କିଛି ଅଛି ଯେ କ୍ୟାମେରାରେ ଫଟୋଉଠାଇ ସେ ରଖିପାରିବ ! ତେଣୁ ତା'ର ମନ ଅତି ବ୍ୟାକୁଳ...।

ହଠାତ୍ ତିନିଟି ପକ୍ଷୀ ଜାହାଜ ସମ୍ମୁଖରେ ଉଡ଼ିବାକୁ ଲାଗିଲେ। ତାଙ୍କ ଉପରେ ନଜର ପଡ଼ିବାକ୍ଷଣି ଜୁମିନା ସହାସ୍ୟ ବଦନରେ ତା'ର କ୍ୟାମେରାର ବଟମ୍ ଚିପିବାକୁ ଲାଗିଲା।

## ଜୁରାସିକ୍ ଦ୍ୱୀପର ସନ୍ଧାନ ମିଳିଲା :

ସୂର୍ଯ୍ୟରଶ୍ମି ସାଗର ଜଳରେ ପଡ଼ି ବିକିରଣ ହୋଇ ଝଲମଲ ହେଉଛି। ସମସ୍ତେ ନିଜ ନିଜର ଚେୟାର ଛାଡ଼ି ଜାହାଜର ବାଡ଼ ଧରି ଠିଆ ହୋଇଗଲେ। କ୍ୟାପ୍‌ଟେନ୍ ତାଙ୍କର ଗଳାରେ ଝୁଲୁଥିବା ବାଇନାକୁଲାର ଆଖିରେ ଲଗାଇ ଦୂରକୁ ଚାହିଁଲେ ଏବଂ ହଠାତ୍ ଉଲ୍ଲସିତ ହୋଇ କହିଲେ - "ଦେଖନ୍ତୁ, ଦେଖନ୍ତୁ ପ୍ରଫେସର, ଆମେ ତମସା ପାହାଡ଼ର କେତେ ନିକଟକୁ ଆସି ଗଲୁଣି।"

ପ୍ରଫେସର ବାଇନାକୁଲାର ଆଖିରେ ଲଗାଇ କିଛି କ୍ଷଣ ନୀରବରେ ନିରୀକ୍ଷଣ କଲେ। ତାହାପରେ ସ୍ମିତହାସ୍ୟ ହୋଇ କହିଉଠିଲେ - "ହଁ, ଏହା ସେହି ତମସା ପାହାଡ଼ ଏଥିରେ ସନ୍ଦେହ ନାହିଁ। ଆମେ ଆଉ କିଛି ସମୟ ମଧ୍ୟରେ ତା'ର ଉପକୂଳରେ ପହଞ୍ଚିଯିବା।"

କିଛିକ୍ଷଣ ମଧ୍ୟରେ ଦୂରଦିଗନ୍ତ ବିସ୍ତାରୀ ଦ୍ୱୀପର ଆଭାସ ସ୍ପଷ୍ଟ ହୋଇଉଠିଲା। ସମସ୍ତେ ପାହାଡ଼ର ଉପରର ଅଂଶକୁ ଦେଖି ନିଜ ନିଜ ମଧ୍ୟରେ ଆଲୋଚନାରେ ଲାଗିଗଲେ। ଦ୍ୱୀପର ସବୁଜ ଗଛଲତା ଉପରେ ମୁଣ୍ଡ ଟେକି ନୀଳ ଆକାଶର ଅନେକ ଦୂର ପର୍ଯ୍ୟନ୍ତ ପାହାଡ଼ର ଚୂଡ଼ା ଲମ୍ବିଯାଇଛି।

ମୁକ୍ତ ଆକାଶରୁ ଦିନର ଆଭା କମି କମି ଆସିଲାଣି। ସୂର୍ଯ୍ୟ କ୍ରମେ ଅସ୍ତାଚଳଗାମୀ ହେଲେଣି। ଆଗତ ପ୍ରାୟ ସନ୍ଧ୍ୟାରେ ଅସ୍ପଷ୍ଟ ରଶ୍ମି ସାଗର ନୀଳଜଳରେ ଲୋଟି ହୋଇପଡୁଛି। ସେଥି ସଙ୍ଗେ ସଙ୍ଗେ ଦ୍ୱୀପଟି ସ୍ପଷ୍ଟରୁ ସ୍ପଷ୍ଟତର ହେବାରେ ଲାଗିଛି।

ଜାହାଜଟି କ୍ରମଶଃ ଦ୍ୱୀପର ନିକଟବର୍ତ୍ତୀ ହେବାକୁ ଲାଗିଛି। ସମସ୍ତେ ଏକତ୍ର ଜାହାଜ ଉପରେ ଠିଆ ହେଲେ ଏବଂ ବାଇନାକୁଲାର୍ ଦ୍ୱାରା ପାହାଡ଼ର ଦୃଶ୍ୟ ମନଯୋଗ ସହକାରେ ନିରୀକ୍ଷଣ କଲେ। ଜୁମିନା ସହସା ଚିତ୍କାର କରି ଉଠିଲା - "ପ୍ରଫେସର ଦେଖନ୍ତୁ, ଦେଖନ୍ତୁ...। ବିଶାଳ ଆକାଶଛୁଆଁ ପ୍ରାଚୀର...।"

ଏତେବେଳକୁ ଜାହାଜ ଦ୍ୱୀପର ଅତି ନିକଟତର ହେଲାଣି। ସେମାନେ ଖାଲି ଆଖିରେ ଦ୍ୱୀପକୁ ନିରୀକ୍ଷଣ କଲେ। ଆଉ ବାଇନାକୁଲାର ଦରକାର ପଡ଼ିଲା ନାହିଁ। ଆକାଶଛୁଆଁ ପ୍ରକାଣ୍ଡ ପ୍ରାଚୀରକୁ ଦେଖି ସେମାନେ ହତଚକିତ ହୋଇଗଲେ।

ପ୍ରଫେସର କହିଲେ - "ହଁ.... ଏହା ହେଉଛି ସେହି ପ୍ରାଚୀର। ଏଥି ସମ୍ପର୍କରେ ବହୁତ କଥା ଆଜି ପ୍ରଶ୍ନବାଚୀ ହୋଇରହିଛି। ଦ୍ୱୀପର ମନୁଷ୍ୟମାନେ ଯେ କାହିଁକି, କେବେ ଓ

କେଉଁଥିପାଇଁ ଏହି ପ୍ରାଚୀର ତୋଳିଥିଲେ ? ତନ୍ମଧ୍ୟରେ ସେମାନେ କେଉଁ ଅତିକାୟ ଭୟଙ୍କର ପ୍ରାଣୀଙ୍କୁ ଲୁକ୍କାୟିତ ଅବସ୍ଥାରେ ରଖିଛନ୍ତି ? ଏହି ପ୍ରାଚୀରର ଆରପଟରେ କ'ଣ ଅଛି, ଇତ୍ୟାଦି ଇତ୍ୟାଦି..... ।''

ତେବେ ଭଗବାନଙ୍କୁ ଅଶେଷ ଧନ୍ୟବାଦ ଯେ ଆମେ ଯଥାସ୍ଥାନରେ ଆସି ପହଞ୍ଚିପାରିଛୁ ।

ପ୍ରାଚୀରଠାରୁ ଅଳ୍ପ ଦୂରରେ ଗଛର ଫାଙ୍କ ଦେଇ ସେମାନେ କେତୋଟି କୁଡ଼ିଆ ଘର ଦେଖିବାକୁ ପାଇଲେ । ରବିନ୍‌ସନ୍ କହିଲେ - ''ଏଗୁଡ଼ିକ ନିଶ୍ଚୟ ଏଠାରେ ମନୁଷ୍ୟ ସମାଜର ଘରବାଡ଼ି । କିଏ ଜାଣେ, ଏହି ଜଙ୍ଗଲୀମାନେ ସଭ୍ୟ ମନୁଷ୍ୟଙ୍କୁ ଚିହ୍ନିପାରିବେ କି ନାହିଁ ? ଅନ୍ୟ ପକ୍ଷରେ ସେମାନେ ଆକ୍ରମଣ ମଧ୍ୟ କରିପାରନ୍ତି ।''



ପ୍ରଫେସର କହିଲେ - ''ଅସମ୍ଭବ ନୁହେଁ । ସେଥିପାଇଁ ଆମ୍ଭମାନଙ୍କୁ ସଦାବେଳେ ପ୍ରସ୍ତୁତ ହୋଇ ରହିବାକୁ ପଡ଼ିବ । କିନ୍ତୁ ସୁଉଚ୍ଚ ପ୍ରାଚୀର ତିଆରି କରି ଯେଉଁମାନେ ହିଂସ୍ରଜନ୍ତୁମାନଙ୍କଠାରୁ ଦୂରରେ ରହିଛନ୍ତି, ସେମାନେ ନିଶ୍ଚିତ ଭାବରେ ବୁଦ୍ଧିମାନ ହୋଇଥିବେ ।''

''ଏଣୁ ଆମ୍ଭମାନଙ୍କୁ ଦେଖିଲେ ଆନନ୍ଦ ଉଲ୍ଲାସରେ ସେମାନେ ନାଚି ଉଠିବେ ।'' - ସାହସର ସହିତ କହିଲା ଜୁମିନା ।

ଜୁମିନା କଥାକୁ ସସ୍ନେହରେ ଶୁଣି ପ୍ରଫେସର ହସି ହସି କହିଲେ - ''ଯଦି ସେଭଳି ପରିସ୍ଥିତି ହୁଏ, ତାହାହେଲେ ତୁମର କ୍ୟାମେରାଟି ଆଉ ଗଳାରେ ସ୍ଥିର ହୋଇ ରହିବ ନାହିଁ । କିନ୍ତୁ ଯଦି ସେମାନେ ନରଖାଦକ ହୋଇଥାନ୍ତି... ?''

''ତେବେ, ଯେତେଦୂର ସମ୍ଭବ ସେମାନେ ସେଭଳି ମନେ ହୁଅନ୍ତି ନାହିଁ । ଯଦି ବି ହୋଇଥାନ୍ତି, ତା'ହେଲେ ଆମେ ଯେଉଁସବୁ ମାରଣାସ୍ତ୍ର, ବୋମା, ଗ୍ୟାସ୍ ଇତ୍ୟାଦି ଆଣିଛୁ; ତାହାରି ସାହାଯ୍ୟରେ ସେମାନଙ୍କୁ ପ୍ରତିରୋଧ କରିପାରିବୁ । ଏଣୁ ଭୟର କୌଣସି କାରଣ ନାହିଁ ।''

କ୍ରମେ ଜାହାଜଟି ଦ୍ୱୀପର ନିକଟବର୍ତ୍ତୀ ହେଲା । ଉପକୂଳରୁ କିଛି ଦୂରରେ ରାତ୍ରିଟି ଅତିବାହିତ କରିବା ନିରାପଦ ବୋଲି କ୍ୟାପଟେନ୍ ମତ ଦେଲେ । ଏଣୁ ସେଇଠି ଲଂଗର ପଡ଼ିଲା ।

ରାତ୍ରିର ବିଳମ୍ବିତ ପ୍ରହରରେ ହଠାତ୍ ଏକ ଭୟଙ୍କର ଶବ୍ଦ ଶୁଭିଲା । ସେଥିରେ ସତେ ଯେପରି ଜାହାଜଟି କମ୍ପିବାକୁ ଲାଗିଲା । ସମସ୍ତେ ବାଲକୋନୀକୁ ଚାଲିଆସିଲେ । ମନେ ହେଲା ଅନ୍ଧକାର ମଧ୍ୟରେ ସତେଯେପରି ଶବ୍ଦଟି ସାଗରର ଜଳରାଶିରେ ତରଙ୍ଗାୟିତ ହୋଇ ଭାସି ଆସୁଛି ଜାହାଜ ନିକଟକୁ । ସେମାନେ କୌତୁହଳ ଓ ସନ୍ଦେହଭରା ଦୃଷ୍ଟିରେ ଅନ୍ଧକାରର ରହସ୍ୟମୟ ଦ୍ୱୀପ ଆଡ଼କୁ ନିରୀକ୍ଷଣ କରୁଥାନ୍ତି । କିନ୍ତୁ ଅନ୍ଧକାର ମଧ୍ୟରେ ନିମଗ୍ନ ହୋଇଥିବାରୁ କିଛି ଦୃଷ୍ଟିଗୋଚର ହେଉ ନଥାଏ । କେବଳ ଦୂରରୁ ଗୋଟିଏ ମାଦଳର ଗୁରୁଗମ୍ଭୀର ଶବ୍ଦ ଭାସି ଆସୁଥାଏ ।

କ୍ରମେ ଅନେକଗୁଡ଼ିଏ ମାଦଳର ଶବ୍ଦ କର୍ଣ୍ଣଗୋଚର ହେବାକୁ ଲାଗିଲା ଏବଂ ସେମାନେ ଏହାରି ତାଳେ ତାଳେ ଶୁଣିବାକୁ ପାଇଲେ ଅନେକ କୋଳାହଳ ।

ରବିନ୍‌ସନ୍ କହିଲେ - ‘‘ଚାଲନ୍ତୁ ପ୍ରଫେସର, ଏଥର ଘଟଣାଟି କ’ଣ ଦେଖି ଆସିବା ?’’

ପ୍ରଫେସର କହିଲେ - ‘‘ଘଟଣାଟି ଆଉ କ’ଣ ? ଜଙ୍ଗଲୀ ଅଧିବାସୀମାନେ ଆମୋଦପ୍ରମୋଦରେ ମାତିଥିବେ ନିଶ୍ଚୟ । ଏହା ଦେଖିବାର ସୁଯୋଗ ବହୁତ ଥର ଘଟିବ । ତା’ ଛଡ଼ା କାଲି ସକାଳେ ଆମେ ନିଶ୍ଚୟ ଦ୍ୱୀପର ପାଦଦେଶରେ ଅବତରଣ କରିବୁ । ରାତି ବହୁତ ହେଲାଣି, ସମସ୍ତେ ବିଶ୍ରାମ ନେବା ଚାଲ ।’’

### ଜୁରାସିକ୍ ଦ୍ୱୀପରେ ପଦାର୍ପଣ :

ରାତିସାରା ଅନବରତ ଶୁଭୁଥାଏ ସେହି ମାଦଳର ଶବ୍ଦ । ସେଥିପ୍ରତି ଆଉ ଆଗ୍ରହ ପ୍ରକାଶ ନ କରି ସମସ୍ତେ ନିଜ ନିଜର କେବିନ୍ ମଧ୍ୟରେ ନିଦ୍ରା ଯାଇଥାନ୍ତି । କେବଳ ଲୁମିନାକୁ ଭଲଭାବରେ ନିଦ ହେଉ ନଥାଏ । ସେ ବାରମ୍ବାର ବିଛଣାରୁ ଉଠୁଥାଏ । କିଛି ସମୟ ଡେକ୍ ଉପରେ ବୁଲି ଆସି ପୁଣି ଶୋଇବାକୁ ଚେଷ୍ଟା କରୁଥାଏ ।

ଏହିପରି ଭାବେ ରାତ୍ରିଟି କଟିଗଲା । ସକାଳ ହେବାରୁ ସମସ୍ତେ ଶଯ୍ୟା ପରିତ୍ୟାଗ କରି ଉଠି ପଡ଼ିଲେ । ଯଥାଶୀଘ୍ର ନିତ୍ୟକର୍ମ ସମାପନ କରି ପ୍ରଫେସର ତାଙ୍କର ସଂଗୀବନ୍ଧୁମାନଙ୍କୁ ଜାହାଜରୁ ଜିନିଷପତ୍ର ନେଇ ସାଥିରେ ଆଣିଥିବା ଛୋଟ ଡଙ୍ଗା ଦୁଇଟିରେ ଭର୍ତ୍ତିକଲେ । ସେତେବେଳକୁ ଦିନ ପ୍ରାୟ ନ’ଟା ବାଜିଯାଇଥାଏ । ସେମାନେ କୂଳ ଆଡ଼କୁ ଅଗ୍ରସର ହେଲେ । ବର୍ତ୍ତମାନର ଦିନ ପରିବେଶରେ ମାଦଳର ଶବ୍ଦ ରାତ୍ରିର ଅବିଶ୍ରାନ୍ତ ଶବ୍ଦର ତୀବ୍ରତାଠାରୁ ବହୁତ କମ୍ ଥିଲା ।

ଦୁଇଟି ଡଙ୍ଗା ମଧ୍ୟରୁ ଗୋଟିକରେ ଥିଲେ ପ୍ରଫେସର ଓ ତାଙ୍କର ସାଥିମାନେ ଏବଂ ଅନ୍ୟଟିରେ ପ୍ରାୟ ଦଶଜଣ ସଶସ୍ତ୍ରବାହିନୀ ଓ ଜଣେ କ୍ୟାମେରାମ୍ୟାନ । ଏହା ଥିଲା ପ୍ରଫେସରଙ୍କ ବିଶେଷ ସୁରକ୍ଷା ବ୍ୟବସ୍ଥା । କୌଣସି ଦୃଶ୍ୟ ଯେପରି ହାତଛଡ଼ା ନ ହୁଏ, ତାହା ଥିଲା ପ୍ରଫେସରଙ୍କର ନିର୍ଦ୍ଦେଶ । ଯଦିଓ ଲୁମିନା ଗଳାରେ କ୍ୟାମେରାଟିଏ ଥିଲା, ତଥାପି ଅନ୍ୟ କ୍ୟାମେରାର ବନ୍ଦୋବସ୍ତ ସେ ଠିକ୍ କରିଥିଲେ କେବଳ ଅଭିଯାନର ଗୁରୁତ୍ୱକୁ ଆଖି ଆଗରେ ରଖି ।

ଦ୍ୱୀପର ଉପକୂଳରେ ପାଦ ଦେଲାପରେ ସମସ୍ତ ବାହିନୀ ଆଗପଛ ଦଳ ବାନ୍ଧି ଆଗକୁ ମାଡ଼ି ଚାଲିଲେ । ସତର୍କତା ସହିତ ସେମାନେ ଶବ୍ଦ ଆସୁଥିବା ଦିଗରେ ଆଗେଇ ଚାଲିଥାନ୍ତି । ସମସ୍ତଙ୍କ ଆଗରେ ଥା'ନ୍ତି ପ୍ରଫେସର, ତାଙ୍କ ପଛକୁ ଜୁମିନା, ରବିନ୍‌ସନ୍ ଓ ଅନ୍ୟମାନେ ।

ଗୋଟିଏ ଦୁଇଟି ଛୋଟ ଝୁମ୍ପୁଡ଼ି ଘର ପାର ହୋଇ ସାରିଲା ପରେ ସେମାନେ ଗୋଟିଏ ବଡ଼ ଝୁମ୍ପୁଡ଼ି ଉଢ଼ାଳରେ ଆସି ଛିଡ଼ା ହେଲେ । ଏହାର ଅଳ୍ପ କେଇପାଦ ଦୂରରେ ଗୋଟିଏ ଖୋଲା ଚଟାଣ ସେମାନଙ୍କର ଦୃଷ୍ଟିଗୋଚର ହେଲା । ଆଗକୁ ଯିବେ କି ନାହିଁ ଚିନ୍ତା କରୁ କରୁ ସାମନାରେ ଏକ ଆଶ୍ଚର୍ଯ୍ୟଧରଣର ଦୃଶ୍ୟ ଦେଖି ପ୍ରଫେସରଙ୍କ ଚକ୍ଷୁ ବିସ୍ତାରିତ ହୋଇଗଲା । ସେହି ବିସ୍ମୟକର ଦୃଶ୍ୟ ସମସ୍ତେ କିଛିଟା ଦେଖିବାକୁ ଲାଗିଲେ ।

ସେହି ଖୋଲା ଚଟାଣଟି ଲମ୍ବି ଯାଇଥାଏ ଆଗକୁ, ଆକାଶ ଛୁଆଁ ପ୍ରାଚୀର ନିକଟକୁ । ତାହାରି ପାଖରେ ଦୁଇଟି ମଞ୍ଚ ତିଆରି ହୋଇଥାଏ । ଗୋଟିଏ ମଞ୍ଚରେ ମନୁଷ୍ୟଟିଏ ବିଚିତ୍ର ରୂପରେ ସଜ୍ଜିତ ହୋଇ ବସିଥାଏ । ତା'ର ସମଗ୍ର ଶରୀର ଲାଲ ଓ ଧଳା ରଙ୍ଗରେ ରଞ୍ଜିତ ହୋଇଥାଏ । ସେ ମଥାରେ ଏକ ଆଶ୍ଚର୍ଯ୍ୟଧରଣ ପକ୍ଷୀପରର ମୁକୁଟ ପିନ୍ଧିଥାଏ । ଗଳାରେ ତା'ର ଝୁଲୁଥାଏ ହାଡର ଏକ ମାଳା, ହାତରେ ଗୋଟିଏ ଦଣ୍ଡ ଏବଂ କଟିଦେଶରେ ହାଡର ଏକ ନିର୍ମିତ ଆଉ ଗୋଟିଏ ମାଳ ଓ ଅଳଙ୍କାର । ତା' ଦୁଇପାର୍ଶ୍ୱରେ ଦୁଇଜଣ ପ୍ରହରୀ ଖଡ଼୍‌ଗ ହସ୍ତରେ ଦଣ୍ଡାୟମାନ ହୋଇଥିଲେ ।

''ଏହି ଲୋକଟି ଯେ ଏମାନଙ୍କର ରାଜା କିମ୍ବା ସର୍ଦ୍ଦାର ହୋଇଥିବେ, ଏଥିରେ ସନ୍ଦେହ ନାହିଁ ।'' - କହିଲେ ପ୍ରଫେସର ।



ଅନ୍ୟ· ମଞ୍ଚରେ ବସିଥାଏ ଜଣେ ତରୁଣୀ । ତା'ର ସର୍ବାଙ୍ଗ ଫୁଲର ପୋଷାକରେ ଆବୃତ ହୋଇ ରହିଥାଏ । କିନ୍ତୁ ତରୁଣୀଟିର ଆଖିରୁ ଅବିରତ ଅଶ୍ରୁ ଝରୁଥାଏ । ସେ ଦୁଃଖରେ ଖୁବ୍ ମ୍ରିୟମାଣ ହୋଇ ବସିଥାଏ । ତା'ସାମନାରେ ଏକ ବିଚିତ୍ରରୂପୀ ଜଙ୍ଗଲୀ ଲୋକ । ବିଚିତ୍ର ଭଙ୍ଗୀରେ ହାତ ସଂଚାଳନ କରି ଅବୋଧ୍ୟ ଭାଷାରେ କ'ଣ ସବୁ ମନ୍ତ୍ର ଉଚ୍ଚାରଣ କରି ଚାଲିଥାଏ । ସେ ମଧ ହାତରେ ଧରିଥାଏ ଦଣ୍ଡଟିଏ ।

ଅବଶ୍ୟ ଏହା ରାଜା ହାତରେ ଥିବା ଦଣ୍ଡଠାରୁ ସାମାନ୍ୟ ଛୋଟ । ଏହି ଲୋକଟି ଯେ ସେମାନଙ୍କର ପୁରୋହିତ, ତାହା ଦୂରରୁ ବୁଝାଯାଉଥିଲା ।

ବହୁ ସଂଖ୍ୟକ ପୁରୁଷ, ସ୍ତ୍ରୀ ଓ ପିଲାମାନେ ମଞ୍ଚ ସମ୍ମୁଖରେ ଦଳବାନ୍ଧି ଧାଡ଼ି ହୋଇ ବସିଥାନ୍ତି । ସମସ୍ତେ ପ୍ରାୟ ଉଲଗ୍ନ ହୋଇଥାନ୍ତି । ଅଣ୍ଟାର ଚାରିପାଖରେ ଚମଡ଼ା ଖଣ୍ଡିଏ ଲେଖା ନାମମାତ୍ର ଗୁଡ଼େଇ ହେବା ଛଡ଼ା ସମସ୍ତ ଶରୀରରେ ଅନ୍ୟ କିଛି ପରିଧେୟ ନ ଥାଏ । ସେମାନଙ୍କ ସମ୍ମୁଖରେ ଗୋଟିଏ ମାଦଳ ବଜାଇବା ଦଳ ପ୍ରଚଣ୍ଡ ବିକ୍ରମର ସହିତ ଅନବରତ ମାଦଳ ବଜାଇ ଚାଲିଥାନ୍ତି । ଝୁମ୍ପୁଡ଼ି ଓ ଜଙ୍ଗଲ ଆଡୁଆଳରେ ଛିଡ଼ା ହୋଇ ଏହି ଅଭିଯାତ୍ରୀ ଦଳ ସେମାନଙ୍କର କାର୍ଯ୍ୟକଳାପ ଦେଖୁଥାନ୍ତି ।

ହଠାତ୍ ପୁରୋହିତ ଉଲ୍ଲସିତ ହୋଇଉଠିଲେ ଏବଂ ମାଦଳର ତାଳେ ତାଳେ ତାଙ୍କ ମୁଖମଣ୍ଡଳ ଲାଲ ହେବାକୁ ଲାଗିଲା । ସେ ଚିତ୍କାର କରି ଉଠିଲେ । ସଙ୍ଗେ ସଙ୍ଗେ ଗରିଲା ଭଳି ଦେଖାଯାଉଥିବା ପ୍ରାୟ ଦଶ-ବାର ଜଣ ଜଙ୍ଗଲୀ ପହିଲିମାନ ଚଟାଣରେ ଆସି ପହଞ୍ଚିଲେ । କିଛି ସମୟ ପରେ ମାଦଳରଂ ତାଳେ ତାଳେ ସେମାନେ ନାଚିବାକୁ ଲାଗିଲେ । ପୁରୋହିତ ଅବିରାମ ମନ୍ତ୍ର ଉଚ୍ଚାରଣ କରିଚାଲିଥାନ୍ତି ।

ରବିନ୍‌ସନ୍ ପ୍ରଫେସରଙ୍କୁ କହିଲେ - ''ଦେଖନ୍ତୁ ତ ସେଇ ତରୁଣୀଟିକୁ - ତା' ମନରେ ଏ ଆନନ୍ଦ ଉଲ୍ଲାସର କିଛି ପ୍ରଭାବ ନାହିଁ । ବରଂ ତା'ର କାନ୍ଦ ବଢ଼ିବାରେ ଲାଗିଛି । ମୁଖମଣ୍ଡଳରେ ତା'ର ଭୟ ଓ ଦୁଃଖର ଛାପ ଲାଗିରହିଛି ।



ତରୁଣୀଟି ଖୁବ୍ ଶୀଘ୍ର ତା'ର ପରିଣତି କ'ଣ ହେବ, ତାହା ଜାଣେ । ଏ ନୃତ୍ୟ ଓ ବାଦ୍ୟର ପରେ ପରେ ତା'କୁ କୌଣସି ବନ୍ୟଜନ୍ତୁ ଉଦ୍ଦେଶ୍ୟରେ ପାଚେରୀର ଆରପଟରେ ଛାଡ଼ିଦିଆଯିବ । ଯାହାହେଉ, ଆମ୍ଭେମାନେ ଉପଯୁକ୍ତ ସମୟରେ ଏଠି ଉପସ୍ଥିତ ହୋଇପାରିଛୁ । ଦୁଇ ତିନିଦିନ ଡେରି କରିଦେଇଥିଲେ ଏହି ଦୁର୍ଲ୍ଲଭ କାଣ୍ଡଟି ଆମେ ହାତଛଡ଼ା କରିଥାନ୍ତୁ ।



କିନ୍ତୁ ଏହି ଜଙ୍ଗଲୀମାନଙ୍କ ଦେହରେ ଏ ଗରିଲା ଭଳି ପୋଷାକ କାହିଁକି ?

ମୁଁ ମଧ ବୁଝିପାରୁ ନାହିଁ । ବୋଧହୁଏ ଗରିଲା ଏମାନଙ୍କର କୁଳଦେବତା ହୋଇଥିବେ । ନଚେତ୍ ଏ ଅରଣ୍ୟରେ କୌଣସି ଜନ୍ତୁ ହୁଏତ ଏହିଭଳି ହୋଇଥିବ ।''

ସଂଘର୍ଷ ଓ ପ୍ରତିଶୋଧ :

ପ୍ରଫେସର ହଠାତ୍ ସମସ୍ତଙ୍କୁ ନିର୍ଦ୍ଦେଶ ଦେଲେ । ସାବଧାନ ହୋଇଯାଅ । ଯିଏ ଯାହାର ଅସ୍ତ୍ରଶସ୍ତ୍ର ସଜାଗ ରଖିଥାଅ । କାରଣ ଏହି ଜଙ୍ଗଲୀମାନଙ୍କ ଆଗରେ ଆମେ ଏବେ ଧରାପଡ଼ି ଯାଇପାରୁ ।

ତାଙ୍କ ପାଟିରୁ କଥା ନ ସରୁଣୁ ଆକସ୍ମିକ ପୁରୋହିତ ମଥା ଉଠାଇ ଉଚ୍ଚସ୍ୱରରେ କ'ଣ କହିବାକୁ ଲାଗିଲେ । ତା' ପରେ ବାଜଣା ବନ୍ଦ ହୋଇଗଲା । ଯେଉଁମାନେ ନାଚୁଥିଲେ ସେମାନେ ମଧ ଠିଆ ହୋଇ ରହିଲେ ।

ଅଭିଯାତ୍ରୀ ଦଳରୁ କେତେକ ବଡ଼ ସୁପର କ୍ୟାମେରାଟି ନେଇ ଫଟୋ ଉଠାଇବାରେ ମଗ୍ନ ଥିଲେ । ଝୁମ୍ପୁଡ଼ିର ଏପଟ ସେପଟ ହୋଇ ତାହା କଲାବେଳେ ସେମାନଙ୍କ ଉପରେ ଜଙ୍ଗଲୀମାନଙ୍କର ନଜର ପଡ଼ିଯାଇଛି ।

ମଞ୍ଚ ପାଖରେ ଥିବା ରାଜା ଦଳବଳ ସହ ଅଭିଯାତ୍ରୀମାନଙ୍କ ଆଡ଼କୁ ମାଡ଼ି ଆସିଲା ଏବଂ ସେମାନଙ୍କ ଆଗରେ ଠିଆ ହୋଇ ତା' ଭାଷାରେ କ'ଣ ସବୁ ବଖାଣିଗଲା । ଏମାନେ କେହି ତା'ର ବିନ୍ଦୁବିସର୍ଗ ବୁଝି ପାରିଲେ ନାହିଁ । କେବଳ ପ୍ରଫେସର କିଛି କିଛି ଜଙ୍ଗଲୀ ଭାଷା ଜାଣିଥିଲେ । ସେ

ସାହସର ସହିତ ତା'ସାମନାରେ ଠିଆ ହୋଇ ତାକୁ ବୁଝାଇବାକୁ ଚେଷ୍ଟା କଲେ । ସେଥିରୁ ସେ ବୁଝିପାରିଲେ ଯେ ରାଜା କହୁଛନ୍ତି - ''କାହିଁକି ତୁମ୍ଭେମାନେ ଏ ତମସା ଦ୍ୱୀପକୁ ଆସିଅଛ ?''

ପ୍ରଫେସର ମଧ ଭଙ୍ଗା ଭଙ୍ଗା ଜଙ୍ଗଲୀ ଭାଷାରେ ଉତ୍ତର ଦେଲେ - ''ଆମେ ତମର ଏହି ଦେବତାକୁ ଦେଖିବାକୁ ଆସିଅଛୁ ।''

ରାଜା କହିଲେ - ''ବାହାରର କୌଣସି ଲୋକ ଆମ ଦେବତାଙ୍କୁ ଦେଖିପାରିବେ ନାହିଁ । ସେମାନେ ଏହି ପାଚେରୀ ଘେରା ଅରଣ୍ୟରେ ଅଛନ୍ତି । ତେଣୁ ତୁମ୍ଭେମାନେ ଫେରିଯାଅ । ନଚେତ୍ ମୃତ୍ୟୁମୁଖରେ ପଡ଼ିବ । କେହି ତୁମକୁ ରକ୍ଷା କରିପାରିବେ ନାହିଁ ।''

ପ୍ରଫେସର କହିଲେ - ''ଠିକ୍ ଅଛି, ତୁମ୍ଭର ଦେବତାଙ୍କୁ ଆମ୍ଭର ଅଭିବାଦନ ଜଣାଇଦେବ ।''

କଥା ଶେଷ କରି ପ୍ରଫେସର ନିଜ ଦଳର ଲୋକମାନଙ୍କୁ ପଛକୁ ଫେରିଯିବା ପାଇଁ ନିର୍ଦ୍ଦେଶ ଦେଲେ । ଅଭିଯାତ୍ରୀ ଦଳ କିଛି ପାଦ ଯିବାପରେ ହଠାତ୍ ଜଙ୍ଗଲୀ ରାଜା ନିକଟରେ ଠିଆ ହୋଇଥିବା ପୁରୋହିତ ଅଙ୍ଗୁଳି ଦେଖାଇ ନିର୍ଦ୍ଦେଶ ଦେଲେ ଜୁମିନାକୁ ଟେକି ଆଣିବା ପାଇଁ । ସଙ୍ଗେ ସଙ୍ଗେ ଜଙ୍ଗଲୀମାନେ ସମସ୍ତେ ଜୁମିନା ଆଡ଼କୁ ଲମ୍ଫ ପ୍ରଦାନ କଲେ ।



ଅଭିଯାତ୍ରୀମାନେ ଏଭଳି ଦୁର୍ଘଟଣା ପାଇଁ ପ୍ରସ୍ତୁତ ହୋଇ ରହିଥିଲେ । ଯେଉଁମାନେ ଜୁମିନା ଆଗକୁ ଆସିବାକୁ ଚେଷ୍ଟା କରୁଥିଲେ, ସେମାନେ ସଙ୍ଗେ ସଙ୍ଗେ ଏମାନଙ୍କର ରାଇଫଲର ଗୁଳି ଚୋଟରେ ଭୂଇଁ ଉପରେ ଟଳି ପଡ଼ିଲେ ।

ସେମାନେ ବୋଧହୁଏ ରାଇଫଲ କ'ଣ ଦେଖି ନ ଥିଲେ କିମ୍ବା ଏହା ବିଷୟରେ ଜାଣି ନ ଥିଲେ । ନଚେତ୍ ସେମାନେ ଏହା ସାମନାକୁ ଆସିବାକୁ ସାହସ କରି ନ ଥାନ୍ତେ । ଏ ଘଟଣାରେ ରାଜା ମର୍ମାହତ ହୋଇପଡ଼ିଲେ । ଗୁଳି ଶବ୍ଦ ଶୁଣିବା ସଙ୍ଗେ ସଙ୍ଗେ ପୁରୋହିତ ସେହି ସ୍ଥାନ ଛାଡ଼ି ପଳାଇଗଲେ । ଅଳ୍ପ ସମୟ ମଧ୍ୟରେ ଚଟାଣଟି ଖାଲି ହୋଇଗଲା ।

ପ୍ରଫେସର କହିଲେ - ''ଏଥର ଆମକୁ ଏ ସ୍ଥାନ ପରିତ୍ୟାଗ କରିବାକୁ ପଡ଼ିବ, କାରଣ ବନ୍ୟପ୍ରାଣୀ ଓ ଜଙ୍ଗଲୀମାନଙ୍କୁ ଆମ ହାତରେ ଥିବା ଅଳ୍ପ କେତେକ ଅସ୍ତ୍ର ଦ୍ୱାରା ବେଶୀ ସମୟ ଧରି ସମ୍ମୁଖୀନ ହେବା ଉଚିତ ହେବ ନାହିଁ । ସେମାନେ ପ୍ରତିଶୋଧ ନେବାକୁ ଆସିଲେ ଆମ୍ଭେ ହଇରାଣରେ ପଡ଼ିଯିବା । ତେଣୁ ଜାହାଜ ନିକଟକୁ ଫେରି ଚାଲ ।''

ଏହାପରେ କିଛି ରାସ୍ତା ଆସିବା ପରେ ପ୍ରାଚୀର ଦେହରେ ଏକ ବିରାଟ ଦୁଇ ପରସ୍ତ କବାଟ ଦେଖିବାକୁ ପାଇଲେ ପ୍ରଫେସର । ଏହାର ବିଶାଳ ଆକୃତି ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । କବାଟକୁ ବାହାର ପଟରୁ ବଡ଼ ବଡ଼ ଗଛ ଗଣ୍ଡି ଦ୍ୱାରା ବନ୍ଦ କରି ଦିଆଯାଇଥିଲା । ପ୍ରଫେସର କହିଲେ - ''ଏଥିରୁ ବୁଝାଯାଉଛି ଯେ ଦରକାର ବେଳେ ହିଁ ଭିତରକୁ ଯିବା ପାଇଁ ଏ କବାଟଟି ଖୋଲାଯାଏ । ଏହାରି ମଧ୍ୟଦେଇ ବୋଧହୁଏ ତରୁଣୀମାନଙ୍କୁ ବନ୍ୟ ଦେବତା ଉଦ୍ଦେଶ୍ୟରେ ଛାଡ଼ି ଦିଆଯାଏ । ସେହି ବନ୍ୟଜନ୍ତୁଙ୍କୁ ହିଁ ସେମାନେ ଦେବତା ବୋଲି ମାନୁଛନ୍ତି । ଦେଖାଯାଉ.... । ସମସ୍ତ ରହସ୍ୟ ଆସ୍ତେ ଆସ୍ତେ ବୁଝାଯାଇ ପାରିବ । ବର୍ତ୍ତମାନ ଆପାତତଃ ଜୀବନରକ୍ଷା ହୋଇଯାଉ ।''

କାଳବିଳମ୍ବ ନ କରି ସେମାନେ ଜାହାଜ ଭିତରକୁ ଫେରିଆସିଲେ । ସନ୍ଧ୍ୟା ହେବାର କିଛି ସମୟ ପରେ ଜୁମିନା ଅନ୍ଧକାର ମଧ୍ୟରେ ନିସ୍ତବ୍ଧ ଦ୍ୱୀପଆଡ଼କୁ ଅନାଇ ରହିଥାଏ । ସେହି ଜଙ୍ଗଲୀ ତରୁଣୀର କରୁଣ ଦୃଶ୍ୟ ତା' ମାନସପଟରେ ଉଙ୍କି ମାରୁଥାଏ - ମାଦଳର ତାଳେ ତାଳେ ପୁରୋହିତ ମନ୍ତ୍ର ଉଚ୍ଚାରଣ କରି ଚାଲିଛି । ସେଠାରେ ଏକ ମହାସମାରୋହ ଚାଲିଛି । ଶିଶୁଠାରୁ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତେ ଉତ୍ସବକୁ ଉପଭୋଗ କରୁଛନ୍ତି ।

ଅଥଚ ଯାହାପାଇଁ ଏହି ଉତ୍ସବର ଆୟୋଜନ, ତା' ପାଇଁ ଏହା ଏକ ହୃଦୟ ବିଦାରକ ବିଷାଦର ସମାରୋହ । ସେଇଥି ପାଇଁ ତା'ର ଦୁଇ ଚିବୁକ ଦେଇ ଝରି ଚାଲିଛି ଅବିଶ୍ରାନ୍ତ ଅଶ୍ରୁର ଧାରା । ଦୁଃଖରେ ମ୍ରିୟମାଣ ହୋଇ ସେ ମୂକ ପାଲଟି ଯାଇଛି । ପ୍ରଫେସର ଯାହା କହୁଥିଲେ ପ୍ରକୃତରେ ତାହା କ'ଣ ସତ୍ୟ ? ତରୁଣୀକୁ ପ୍ରାଚୀର ଆରପଟରେ ଦେବତାଙ୍କ ଉଦ୍ଦେଶ୍ୟରେ ବନ୍ୟଜନ୍ତୁଙ୍କ ଆହାର ପାଇଁ ଛାଡ଼ି ଦିଆଯିବ... ? କିଏ ସେହି ଦେବତା ? ତାକୁ ଯଦି ଜାଣି ହୁଅନ୍ତା... !

ଜୁମିନାର ବ୍ୟାକୁଳ ବେଦନା, କାତର ମନ ବାରମ୍ବାର ଅନ୍ଧକାରର ନିବିଡ଼ ଆବରଣ ଭେଦକରି ଛୁଟି ଚାଲିଛି ସେହି ଦ୍ୱୀପରେ ଥିବା ଶୋକାପ୍ଲୁତ ଅଶ୍ରୁମୁଖୀ ତରୁଣୀ ପାଖକୁ । ଏହିଭଳି ଅସରନ୍ତି ଚିନ୍ତା ମନକୁ ଭାରାକ୍ରାନ୍ତ କରିଦେଉଛି ।



ହଠାତ୍ ଜାହାଜର ବାରଣ୍ଡା ଉପରେ ଗୋଟାଏ କ'ଣ ଶବ୍ଦ ଶୁଣାଗଲା । ଲୁମିନା ମୁହଁ ଫେରାଇ ଯାହା ଦେଖିଲା, ସେଥିରେ ତା'ର ଚକ୍ଷୁ ବିସ୍ଫାରିତ ହୋଇଗଲା । ସେ ଦେଖିବାକୁ ପାଇଲା ଯେ, ଅନ୍ଧକାରର ଅସ୍ପଷ୍ଟ ଆଲୋକରେ ଏକ ଘନ କଳା ରଙ୍ଗର ମୂର୍ତ୍ତି ତାକୁ ଜ୍ୱଳନ୍ତ ଆଖିରେ ଅନାଇ ଚାହିଁଛି । ଲୁମିନା ଭୟରେ ଚିତ୍କାର କରି ଉଠିଲା । କିନ୍ତୁ ଜଙ୍ଗଲୀ ମଣିଷଟିର ହଠାତ୍ ଆକ୍ରମଣ ହେତୁ ସେ ଅଧିକ ଚିତ୍କାର କରିବାର ସୁଯୋଗ ପାଇଲା ନାହିଁ । ବନ୍ୟଜନ୍ତୁଟି ତା'ର ବଳିଷ୍ଠ ବାହୁରେ ତାକୁ ଟେକିନେଇ ଅନ୍ଧକାରରେ ଲୀନ ହୋଇଗଲା ।

ଦ୍ୱୀପରୁ ବହୁ ସମୟ ପର୍ଯ୍ୟନ୍ତ ଶବ୍ଦ ଅଭିଯାତ୍ରୀମାନଙ୍କର କର୍ଣ୍ଣଗୋଚର ହେଲାନାହିଁ । ପ୍ରଫେସର ତାଙ୍କର କେବିନ୍ ଭିତରେ ବସି ରବିନ୍‌ସନ୍ ଓ କ୍ୟାପ୍‌ଟେନ୍‌ଙ୍କ ସହିତ ଆଗାମୀ ଦିନର କାର୍ଯ୍ୟକ୍ରମ ବିଷୟରେ ଆଲୋଚନାରେ ମଗ୍ନ ଥାଆନ୍ତି । ସେମାନେ ଭାବୁଥାନ୍ତି ଯେ ସକାଳର ଘଟଣା ଯୋଗୁଁ ବର୍ତ୍ତମାନ କେତେଦିନ ସେମାନେ ଆଉ ଉତ୍ସବରେ ମନ ଦେବେ ନାହିଁ । ସେଥିପାଇଁ ଆଜିର ସନ୍ଧ୍ୟା ବହୁତ ଶାନ୍ତ ଏବଂ ପ୍ରାୟତଃ କୋଳାହଳଶୂନ୍ୟ । କ୍ୟାପ୍‌ଟେନ୍ କହିଲେ - ''ସେହି ପ୍ରାଚୀରର ଦରଜା ଖୋଲିବାକୁ ହେଲେ ଦିନବେଳା ବିପଜ୍ଜନକ । କାରଣ ଏହା କରିବାର ଦେଖିଲେ ଜଙ୍ଗଲୀ ଲୋକମାନେ ନିଶ୍ଚୟ ଆମକୁ ପ୍ରତିଆକ୍ରମଣ କରିବେ । ତେଣୁ ଆମ ପାଇଁ ରାତ୍ରି ହିଁ ଉପଯୁକ୍ତ ସମୟ । ଆଜିକାର ଘଟଣା ପରଠାରୁ ସେମାନେ ନିଶ୍ଚୟ ଦ୍ୱୀପର ଚତୁର୍ଦ୍ଦିଗରେ ଘୂରି ବୁଲୁଥିବେ । ଏଣୁ ସତର୍କତାର ସହ ଆମକୁ କାଳବିଳମ୍ବ ନ କରି ତା' ଭିତରେ ପଶି ସେମାନଙ୍କ ଦେବତାର ସନ୍ଧାନ ନେବାକୁ ହେବ । କାରଣ ଦେବତା ପ୍ରକୋପକୁ ଏଡ଼ାଇବା ପାଇଁ ତିନିଚାରି ଦିନ ନିଶ୍ଚୟ ଉତ୍ସବରେ ମାତି ରହିବେ । ଆମ୍ଭେମାନେ ଏହି ସୁଯୋଗରେ ଭିତରକୁ ଯିବୁ ।''

ପ୍ରଫେସର ଅନେକ କିଛି କହିବାକୁ ଯାଉଥିଲେ, କିନ୍ତୁ ହଠାତ୍ ପୁଣି ଦ୍ୱୀପଆଡୁ ମାଦଳର ବାଜଣା ଶୁଣାଗଲା । ସେମାନେ କେବିନ୍‌ରୁ ବାହାରି ଆସି ଦ୍ୱୀପକୁ ଚାହିଁଲେ । ଏହା ଆଲୋକମାଳାରେ ଆଲୋକିତ ହୋଇପଡ଼ିଥିଲା । କ୍ରମେ କୋଳାହଳ ମଧ୍ୟ ଶୁଣିବାକୁ ମିଳିଲା । ସନ୍ଧ୍ୟାଠାରୁ ଏ ପର୍ଯ୍ୟନ୍ତ ସାରା ଦ୍ୱୀପଟି କିନ୍ତୁ ଅନ୍ଧକାରରେ ଆବଦ୍ଧ ଥିଲା ।

ଏହି ସମୟରେ ବାରଣ୍ଡାରେ କାହାର ପଦ ଶବ୍ଦ ଶୁଭିଲା । ସେମାନେ ଫେରି ଚାହିଁଲେ । ଦେଖିଲେ ଯେ ତାଙ୍କର ଜଣେ କର୍ମଚାରୀ ହାତରେ ଜଙ୍ଗଲୀ ଫୁଲର ଗଜରା ମାଳା ଧରି ଧଇଁସଇଁ ହୋଇ ପ୍ରଫେସରଙ୍କ ଆଡ଼କୁ ଆସୁଛି । ପ୍ରଫେସର ତା' ହାତରୁ ଗଜରାମାଳଟି ନେଲେ ।

ତାହା ଦେଖି ରବିନ୍‌ସନ୍ କହିଲେ - ''ଆଜି ସକାଳେ ମୁଁ ଝୁମ୍ପୁଡ଼ି ନିକଟରୁ ତୋଳି ଆଣିଥିବା ଜଙ୍ଗଲୀ ଫୁଲର ମାଳା କରି ଜୁମିନାକୁ ଦେଇଥିଲି । ଏ ତ ସେଇ ମାଳା । ତେବେ, ଜୁମିନା କାହିଁ, କେଉଁଠି ଅଛି... ?''

କେବିନ୍ ଭିତରକୁ ଯାଇ ସେମାନେ ଖୋଜିବାକୁ ଲାଗିଲେ । କିନ୍ତୁ ତା'ର ପତ୍ତା ମିଳିଲା ନାହିଁ । ଅଭିଯାତ୍ରୀ ଦଳ କାଳବିଳମ୍ବ ନ କରି କିଛିକ୍ଷଣ ମଧ୍ୟରେ ଦୁଇଟି ଡଙ୍ଗାରେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ବିଦ୍ୟୁତ୍ ବେଗରେ ଦ୍ୱୀପ ଅଭିମୁଖେ ଅଗ୍ରସର ହେଲେ ।

## ଅପହୃତା ଜୁମିନାର ଅନୁସନ୍ଧାନ :

କାଠଭେଳାରେ ଜୁମିନାକୁ ଧରି କେତେଜଣ ଜଙ୍ଗଲୀ ଦ୍ୱୀପରେ ପହଞ୍ଚିଲେ । ସେମାନଙ୍କୁ ଦେଖି ଜୁମିନା ଭୟରେ ଜ୍ଞାନ ହରାଇ ବସିଥିଲା । କିଛି ସମୟ ପରେ ତା'ର ଚେତା ଫେରି ଆସିଲା । ସେ ଧୀରେ ଧୀରେ ଆଖି ଖୋଲି ଚାହିଁଲା । ପୂର୍ବ ଘଟଣା ସବୁ ତା'ର ମନେ ପଡ଼ିଲା । ସେ ଦେଖିବାକୁ ପାଇଲା ସକାଳେ ଯେପରି ତରୁଣୀଟିକୁ ଫୁଲମାଳା ପିନ୍ଧାଇ ଚଟାଣ ପରେ ବସାଇ ପୁରୋହିତ ମନ୍ତ୍ର ଉଚ୍ଚାରଣ କରୁଥିଲା । ବର୍ତ୍ତମାନ ତାକୁ ମଧ୍ୟ ସେହିପରି କରାଯାଉଛି ।

ଗୋଟିଏ ପାଖରେ ପୁରୋହିତ ମାଦଳର ତାଳେ ତାଳେ ମନ୍ତ୍ର ଉଚ୍ଚାରଣ କରି ଚାଲିଥାଏ । ପାଖରେ ଥିବା ମଞ୍ଚ ଉପରେ ରାଜା ବସିଥାଏ । ଅପର ପାଖରେ ଜଙ୍ଗଲୀ ଲୋକମାନେ ଅବାକ୍ କରି ଚାହିଁ ରହିଥାନ୍ତି । ଯେପରିକି ସେମାନେ କୌଣସି ଏକ ଅଲୌକିକ ଘଟଣା ଦେଖିବାକୁ ଯାଉଛନ୍ତି । ତାଙ୍କରି ପାଖରେ ଦଶ/ବାର ଜଣ ଗରିଲାବେଶଧାରୀ ଜଙ୍ଗଲୀ ମାଦଳର ତାଳେ ତାଳେ ନୃତ୍ୟ କରିବାରେ ଲାଗିଥାନ୍ତି । ପ୍ରାୟ ଶହେ ପାଖାପାଖି ମାଦଳର ସମୂହ ଶବ୍ଦରେ ବନଭୂମି ଥରହର ହୋଇ ଉଠୁଥାଏ ।

ଜୁମିନା ଏବେ ନିଜର ପରିଣତି କ'ଣ ହେବାକୁ ଯାଉଛି, ତାହା ବୁଝିପାରିଲା । ସକାଳେ ପୂଜା କରାଯାଉଥିବା ସେହି ତରୁଣୀଟି ରାଜା ପଛପଟେ ଠିଆ ହେବାର ସେ ଦେଖିବାକୁ ପାଇଲା । ଭାଗ୍ୟର କି ବିଡ଼ମ୍ବନା ସତେ ! ସକାଳେ ସେ ନିଜେ ଥିଲା ଦର୍ଶକ ଏବଂ ଏ ତରୁଣୀଟି ଅପେକ୍ଷା କରିଥିଲା ଅନାଗତ ମୃତ୍ୟୁକୁ । କିନ୍ତୁ ଏବେ ସେ ଦର୍ଶକ, ଆଉ ଜୁମିନାର ଆଗରେ ମୃତ୍ୟୁର

କଲାଛାଇ । ତାକୁ ଦେବତା ପାଇଁ ଉତ୍ସର୍ଗ କରିବା ଉଦ୍ଦେଶ୍ୟରେ ଜଙ୍ଗଲୀମାନେ ଆନନ୍ଦରେ ନାଚି ଉଠୁଛନ୍ତି । ଏହି କଥା ଚିନ୍ତା କରି ହଠାତ୍ ଉଠିପଡ଼ି ସେ ଚିତ୍କାର କଲା, ''ନା...ନା.... ।''

ସଙ୍ଗେ ସଙ୍ଗେ ପାଞ୍ଚଜଣ ଲୋକ ଜୋର କରି ତା'ହାତ ଧରି ବସାଇଦେଲେ । ନିଜର ଚେଷ୍ଟା ବିଫଳ ଜାଣି ତୁନି ହୋଇ ସେ ବସିବାକୁ ଶ୍ରେୟସ୍କର ମଣିଲା ।

ଠିକ୍ ଏତିକିବେଳେ ଜଣେ ବିଭତ୍ସରୂପୀ ଉଚ୍ଚସ୍ୱରରେ କ'ଣ ସବୁ କହି ଚିତ୍କାର କରିବାକୁ ଲାଗିଲା । ସଙ୍ଗେ ସଙ୍ଗେ ଦଳେ ବଳବାନ ଲୋକ କାଠଗଣ୍ଡିଗୁଡ଼ିକୁ କାଢ଼ିଦେଇ ପ୍ରାଚୀରର ଦରଜାଟିକୁ ଠେଲିବାକୁ ଲାଗିଲେ । ଦରଜାଟି ଖୋଲିଗଲା । ମଶାଲର ଆଲୁଅରେ ଜୁମିନା ଦେଖିବାକୁ ପାଇଲା, ଆଗରେ କିଛି ଫାଙ୍କା ଜାଗା ରହିଛି । ତାହାରି ପାଖରେ ଦୁଇଟି କାଠର ବେଦୀ ରହିଛି । ବେଦୀର ପଛପଟେ ଗଭୀର ଅରଣ୍ୟଟି ପୂରା ଅନ୍ଧକାରମୟ ।

ସେହି ଶକ୍ତିଶାଳୀ ଗରିଲାବେଶଧାରୀ ଜଙ୍ଗଲୀମାନେ ତାକୁ ଧରିନେଇ ବେଦୀ ଉପରେ ବସାଇଦେଲେ । ସେ ଅନୁଭବ କଲା ସତେ ଯେପରି ସେହି ଶକ୍ତିଶାଳୀ ହାତଗୁଡ଼ିକର ଚାପ ତା'ର ମାଂସପେଶୀ ଭେଦ କରି ହାଡ଼କୁ ଚିପି ଦେଇଛି । ସେ ସାମାନ୍ୟ ପ୍ରତିବାଦର ସୁଯୋଗ ପାଇଲା ନାହିଁ ।

ତାକୁ ବେଦୀ ଉପରେ ଠିଆ କରାଇ ସେମାନେ ତା'ର ଦୁଇହାତକୁ ଝୁଲୁଥିବା ଦଉଡ଼ି ଦ୍ୱାରା ବାନ୍ଧିଦେଲେ । ଏହାପରେ ଆଉ ମୁହୂର୍ତ୍ତ ସମୟ ବିଳମ୍ବ ନ କରି ସେମାନେ ଦରଜା ବନ୍ଦ କରିଦେଲେ । ତତ୍‌ପରେ ଉଚ୍ଚ ପାଚେରୀର ବାମଧାରକୁ ଲାଗିଥିବା ଏକ ଲମ୍ବା କାଠ ସିଡ଼ି ସାହାଯ୍ୟରେ ପାଚେରୀ ଉପରକୁ ଉଠିଗଲେ ଏବଂ ହାତରେ ମଶାଲମାନ ଧରି ସେଠାରେ ବସି ବେଦୀଆଡ଼କୁ ଚାହିଁ ରହିଲେ ।

ହଠାତ୍ ଅରଣ୍ୟ ଭିତରୁ ଏକ ଭୟଙ୍କର ଶବ୍ଦ ଭାସି ଉଠିଲା । ସେଥିରେ ଗଗନପବନ ପ୍ରକମ୍ପିତ ହେଲା । ଏକ ବିଶାଳକାୟ ଦୈତ୍ୟ ଆସି ଜୁମିନାର ସମ୍ମୁଖରେ ଠିଆ ହୋଇଗଲା । କିଛି ସମୟ ନିର୍ଲିପ୍ତ ନୟନରେ ଚାହିଁ ତା'ର ବଳିଷ୍ଠ ହାତରେ ତାକୁ ଉପରକୁ ଟେକି ଧରିଲା । ବୋଧହୁଏ ମନେ ମନେ ଭାବିଲା ଯେ ଜଙ୍ଗଲୀମାନେ ତାକୁ ଏଥର ଗୋଟିଏ ଅପରୂପ ଯୁବତୀକୁ ଉପହାର ଦେଇଛନ୍ତି । ଜୁମିନାକୁ ଟେକିନେଇ ସେ ଅରଣ୍ୟ ଭିତରକୁ ଫେରିଗଲା ।

ଠିକ୍ ଏହି ସମୟରେ ଅଭିଯାତ୍ରୀ ଦଳର ବନ୍ଧୁକ ଚୋଟରେ ମଶାଲଧାରୀ ଜଙ୍ଗଲୀ ଦର୍ଶକ କେଇଜଣ ପାଚେରୀ ତଳେ ଲୋଟି ପଡ଼ିଲେ ଏବଂ ଆଉ କେତେଜଣ ପ୍ରାଣ ବିକଳରେ ଏଣେତେଣେ ପଳାଇଗଲେ ।

ରବିନ୍‌ସନ୍ କ୍ଷୀଣ ଆଲୋକରେ ଦୈତ୍ୟକୁ ପଳାୟନ କରୁଥିବାର ଦେଖି ପାରିଥିଲେ । ସଙ୍ଗେ ସଙ୍ଗେ ସେ ତା'ର ପଶ୍ଚାଦ୍‌ଧାବନ କରିବାକୁ ଉଦ୍ୟତ ହେଲେ । କିନ୍ତୁ ପ୍ରଫେସର ମନା କଲେ ଏବଂ କହିଲେ - ''ସମସ୍ତେ ଅରଣ୍ୟ ଭିତରକୁ ପଶିବା ଶ୍ରେୟସ୍କର ହେବ ନାହିଁ । ତେଣୁ ଏହି ପାଚେରୀ ନିକଟରେ ଗୋଟିଏ ଦଳ ରହିବେ । ଆଉ ଗୋଟିଏ ଦଳ ଦୈତ୍ୟକୁ ଅନୁସରଣ କରିବା ଠିକ୍

ହେବ ।'' ତେଣୁ କ୍ୟାପ୍‌ଟେନ୍ ଗୋଟିଏ ଦଳ ନେଇ ପାଚେରୀ ସମ୍ମୁଖରେ ଛିଡ଼ାହେଲେ । ରବିନ୍‌ସନ୍ ଓ ପ୍ରଫେସର ଅନ୍ୟ ଏକ ଦଳ ନେଇ ଅରଣ୍ୟ ଭିତରକୁ ଧାଇଁଲେ ।

ଏହାରି ଭିତରେ ରାତି ଶେଷ ହୋଇଥାଏ । ସକାଳର କଅଁଳ ଖରା ଭୂଇଁ ଉପରେ ପଡ଼ିଲା । କିନ୍ତୁ ସେମାନେ ଯେତେ ଦୂରକୁ ଯାଉଥାନ୍ତି, ଜଙ୍ଗଲ ଅଧିକ ଗଭୀର ଓ ଅନ୍ଧକାରମୟ ଦେଖାଯାଉଥାଏ । କ୍ଷୀଣ ସୂର୍ଯ୍ୟାଲୋକରେ ପ୍ରଫେସର ଜଙ୍ଗଲର ମାଟିରେ ମନୁଷ୍ୟ ପାଦ ଆକୃତିର ବିଶାଳ ଦୁଇଟି ପାଦଚିହ୍ନ ଆବିଷ୍କାର କଲେ । ତାହାକୁ ଅନୁସରଣ କରି ଦଳକୁ ନେଇ ସେମାନେ ଆଗକୁ ମାଡ଼ି ଚାଲିଥାନ୍ତି । ଜଙ୍ଗଲ କ୍ରମଶଃ ଏତେ ଘଞ୍ଚ ହୋଇଯାଉଥାଏ ଯେ ସୂର୍ଯ୍ୟାଲୋକ ଭୂଇଁରେ ପଡୁ ନଥାଏ । ବିଶାଳ ବିଶାଳ ବୃକ୍ଷମାନ ଶାଖା ପ୍ରଶାଖାମାନ ମେଲାଇ ଆକାଶକୁ ମଥା ଟେକିଥାନ୍ତି । ସେଗୁଡ଼ିକର ବୟସ ଲକ୍ଷ ଲକ୍ଷ ବର୍ଷ ହେବ । ଏତେ ବଡ଼ ବଡ଼ ବୃକ୍ଷ ସେମାନେ ଆଗରୁ କେବେ ଦେଖି ନଥିଲେ ।

ଆଗକୁ ଚାଲୁ ଚାଲୁ ପ୍ରଫେସର କହିଲେ - ''ଏହି ବିଶାଳକାୟ ବୃକ୍ଷଗୁଡ଼ିକ ହେଉଛି, 'ମେଇଡ଼େନ ହେୟାର ଟ୍ରି' । ବୈଜ୍ଞାନିକ ଭାଷାରେ ଏହାକୁ 'ଗିନରଣାବାସଲୋରା' କୁହାଯାଏ । ଆଜକୁ ପ୍ରାୟ କୋଡ଼ିଏ କୋଟି ବର୍ଷ ଧରି ଏଗୁଡ଼ିକ ପୃଥିବୀରେ ବଞ୍ଚି ରହିଛନ୍ତି । ଆଜକୁ ପ୍ରାୟ ଦଶଲକ୍ଷ ବର୍ଷ ପୂର୍ବେ ମନୁଷ୍ୟର ପ୍ରଥମ ଆବିର୍ଭାବ ସମୟରେ ପୃଥିବୀରେ ତୁଷାର ଯୁଗ ଆରମ୍ଭ ହୋଇଥିଲା । ଏହି ସମୟରେ ବହୁ ପ୍ରାକ୍-ଐତିହାସିକ ବୃକ୍ଷଗୁଡ଼ିକର ବିଲୟ ଘଟିଥିଲା । କେବଳ ଚୀନ, ଜାପାନ ଓ କୋରିଆ ଅଞ୍ଚଳରେ ତହିଁରୁ କିଛି ରହିଯାଇଛି । କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା ଯେ ଏହି ବିଚ୍ଛିନ୍ନ ଦ୍ୱୀପପୁଞ୍ଜରେ ଏଗୁଡ଼ିକ ଆସିଲା କିପରି ?''

ରବିନ୍‌ସନ୍ କହିଲେ - ''ହଁ, ତେବେ ଏ ଯେଉଁ ବିଶାଳକାୟ ଜୀବଟି ଆମେ 'ଦେଖିଲେ, ତାହା ଯେ କୌଣସି ଆଧୁନିକ ଜୀବଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏହା କବଳରୁ ଜୁମିନାକୁ ଫେରାଇ ଆଣି ହେବ କି ନାହିଁ କେଜାଣି... ? ଏହିଭଳି ଭାବରେ ଯେ ବିପଦଟା ଆମ ଉପରକୁ ମାଡ଼ି ଆସିବ, ତାହା କିଏ ଜାଣିଥିଲା ।''

ପ୍ରଫେସର କହିଲେ - ''ବିପଦ ଆକସ୍ମିକ ଭାବରେ ଆସେ ରବିନ୍‌ସନ୍, ଆପଣ ଦୁର୍ବଳ ହୁଅନ୍ତୁ ନାହିଁ । ଜୁମିନାକୁ ଫେରାଇ ଆଣିବାକୁ ଆମେ ପ୍ରାଣପଣେ ଚେଷ୍ଟା କରିବୁ । ସେହି କାରଣରୁ ଆମ୍ଭମାନଙ୍କୁ ପ୍ରତ୍ୟେକ ମୁହୂର୍ତ୍ତ ଚିନ୍ତାକରି କାର୍ଯ୍ୟରେ ଲାଗିବାକୁ ପଡ଼ିବ ।''

## ଡାଇନୋସର ସହିତ ମୁକାବିଲା :

ଦଳର ପୁରୋଭାଗରେ ପ୍ରଫେସର ଓ ରବିନ୍‌ସନ୍ । ଅନ୍ୟମାନେ ପଛରେ ଚାଲିଥା'ନ୍ତି । ସମସ୍ତଙ୍କ ହାତରେ ରାଇଫଲ । ସତର୍କ ଦୃଷ୍ଟିରେ ବୁଲୁ ବୁଲୁ ସେମାନେ ଏକ ବିରାଟ ବୁଦା ପଛରେ ଆସି ଛିଡ଼ାହେଲେ । ସାମ୍ନାରେ ଅଳ୍ପ ଫୁଟ ଦୂରରେ ଏକ ଅଦ୍ଭୁତ କିମ୍ଭୁତକିମାକାର ଜୀବଟିଏ ଆଖିରେ ପଡ଼ିଲା । ସେମାନେ ବୁଦା ଉହାଡ଼ରେ ଠିଆ ହୋଇ ଜୀବଟିକୁ ଭଲ ଭାବରେ ଲକ୍ଷ୍ୟ କଲେ । କେତୋଟି ହାତୀକୁ ଏକତ୍ର କଲେ ଯେତିକି ବଡ଼ ଦେଖାଯିବ, ଜୀବଟି ଠିକ୍ ସେହିପରି ଦେଖାଯାଉଥିଲା ।

ଲାଞ୍ଜଟା କୁମ୍ଭୀର ରଙ୍ଗ ଭଳି । ସମଗ୍ର ପିଠି ମୋଟା ଚମଡ଼ା ଦ୍ୱାରା ଆବୃତ । ତା' ଉପରେ ତୀକ୍ଷ୍ଣ ମୁନିଆ କଣ୍ଟା । ମୁଣ୍ଡରୁ ଆରମ୍ଭ କରି ଲାଞ୍ଜ ପର୍ଯ୍ୟନ୍ତ ଲୁହାର ପାତ ବସାଇ ଦିଆଯାଇଥିଲା ଭଳି ଦେଖାଯାଉଥିଲା । ଜନ୍ତୁଟି ଚତୁଷ୍ପଦ । ଜଙ୍ଗଲ ଭିତରେ ଚାଲିବାବେଳେ ଝଣଝଣ ଶବ୍ଦ କରୁଥାଏ । ଜଙ୍ଗଲ ଭିତରେ ବୁଲି ବୁଲି ତାହା ଘାସ ଓ ଗଛର ପତ୍ର ଖାଉଥାଏ ।

ଜନ୍ତୁଟିକୁ ଦେଖି ପ୍ରଫେସର ସ୍ତମ୍ଭୀତ ହୋଇଗଲେ ଏବଂ ଧୀରସ୍ୱରରେ କହିଲେ, ''ଏହା ହେଉଛି ଷ୍ଟେଗୋସରାସ୍ । ଜୁରାସିକ୍ ଯୁଗର ତୃଣଭୋଜୀ ଅନିଥିସିୟା ଗୋତ୍ରର ଡାଇନୋସର । ସାଢ଼େ ଛଅକୋଟି ବର୍ଷପୂର୍ବେ ଏ ଗୁଡ଼ିକ ପୃଥିବୀବକ୍ଷରୁ ନିଶ୍ଚିହ୍ନ ହୋଇଯାଇଛନ୍ତି । ପୃଥିବୀର ବିଭିନ୍ନ ପ୍ରାନ୍ତରୁ ବୈଜ୍ଞାନିକମାନେ ବର୍ତ୍ତମାନ ଏମାନଙ୍କର କଙ୍କାଳ ମାଟିତଳୁ ଆବିଷ୍କାର କରିଛନ୍ତି ।''



ଏଗାର କୋଟି ବର୍ଷର ପୂର୍ବେ ପଶ୍ଚିମ ଆଫ୍ରିକାରେ ଓର୍‌ୟାନୋସରାସ ନାମରେ ଡାଇନୋସର ବାସ କରୁଥିଲେ । ଏମାନଙ୍କର ପିଠି ଉପରେ ଶିରାଟିଏ ଖୁବ୍ ମୋଟା ଓ ସ୍ଫିତ ହୋଇ ପିଠି ଉପରୁ ଲାଞ୍ଜ ପର୍ଯ୍ୟନ୍ତ ଉଠିଥିଲା ଯେ ତାହା ଏକ ନଉକାର ପାଲ ଭଳି ଦେଖାଯାଉଥିଲା । ଅନୁମାନ କରାଯାଏ ଯେ - ଏହି ପାଲ ଓ ଓର୍‌ୟାନୋସରାସ ଶରୀରରେ ଉତ୍ତାପ ସଂଚାଳନର କାର୍ଯ୍ୟ କରୁଥାଏ । ଏହା ସାହାଯ୍ୟରେ, ଡାଇନୋସର ସକାଳର ସୂର୍ଯ୍ୟ ତାପ ଗ୍ରହଣ କରୁଥାଏ ଅଥବା ଶରୀରରୁ ଅଧିକ ଉତ୍ତାପ ଦିନର ମଧ୍ୟଭାଗରେ ପରିତ୍ୟାଗ କରୁଥାଏ ।

ରବିନ୍‌ସନ୍ ସବିସ୍ମୟ ଭାବରେ କହିଲେ- ''ଏ ଜୀବଟି କ'ଣ ସେହି ସାଢ଼େ ଛଅକୋଟି ବର୍ଷ ପୂର୍ବର ।''

''- ହଁ, ରବିନ୍‌ସନ୍ ! ସାଢ଼େ ଛଅ କୋଟି ବର୍ଷ ପୂର୍ବେ ପୃଥିବୀରେ ବିଚରଣ କରୁଥିବା ଜୀବନ୍ତ ସରୀସୃପକୁ ଆମେ ଏଠି ଆଖି ସାମନାରେ ଦେଖୁଛୁ । ତେବେ ଆଶ୍ଚର୍ଯ୍ୟ ଲାଗୁଛି ଯେ, ଜୁରାସିକ୍ ଯୁଗର ଏ ପ୍ରାଣୀ ବର୍ତ୍ତମାନ ଏହି ପରିବେଶରେ ବଞ୍ଚି ରହିଛି କିପରି ? ଏହାକୁ ନେଇ ଆମ୍ଭେମାନେ ବର୍ତ୍ତମାନ ଆଧୁନିକ ପ୍ରାଣୀବିଜ୍ଞାନରେ ଏକ ବିସ୍ମୟକର ଜିଜ୍ଞାସାର ପଥରେ ଛିଡ଼ା ହୋଇପାରିବୁ । ଏ ହେଉଛି ଏକ ଦୁର୍ଲ୍ଲଭ ଆବିଷ୍କାର । ଯାହା ଫଳରେ କି ଜୀବବିଜ୍ଞାନର ଇତିହାସକୁ ନୂତନ ଭାବରେ ଲେଖିବାକୁ ବାଧ୍ୟ କରିବ ।''

''ଡାଇନୋସରମାନେ ପରା ଭୟଙ୍କର ମାଂସାଶୀ ପ୍ରାଣୀ । କିନ୍ତୁ ଏଗୁଡ଼ିକ ଯେ ତୃଣଭୋଜୀ...'' ପଚାରିଲେ ରବିନ୍‌ସନ୍ ।

ପ୍ରଫେସର କହିଲେ - ''ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଏପର୍ଯ୍ୟନ୍ତ ତିନିଶହ ଜାତିର ଡାଇନୋସରଙ୍କ କଙ୍କାଳ ଆବିଷ୍କୃତ ହୋଇଛି । ସେହି ସବୁକୁ ଦୁଇଟି ବର୍ଗରେ ବିଭକ୍ତ କରାଯାଇଛି । ତହିଁରୁ ପ୍ରଥମଟି ହେଲା 'ଅନିଥିମିୟା' । ଏଗୁଡ଼ିକ ତୃଣଭୋଜୀ ଏବଂ ଚତୁଷ୍ପଦ । ଏମାନେ ଅତି ବିଶାଳକାୟ । ଏହି ବର୍ଗ ମଧ୍ୟରେ ଅଛନ୍ତି - ଷ୍ଟେଗୋସରାସ୍, ଟ୍ରାଇସେରାଟୋପ୍, ଇଗୁୟାନଡନ ଇତ୍ୟାଦି ଡାଇନୋସର ।

ଦ୍ୱିତୀୟ ବର୍ଗର ଡାଇନୋସରମାନେ ହେଲେ ମାଂସାଶୀ । ଏମାନଙ୍କୁ ସୌରିଶ୍ଚିୟା କୁହାଯାଏ । ଏମାନେ ଦ୍ୱିପଦ ବିଶିଷ୍ଟ ପ୍ରାଣୀ । ହାତଭଳି ଦୁଇଟି କ୍ଷୁଦ୍ରାକୃତି ଅଂଶ ଏମାନଙ୍କ ଛାତିରେ ଲାଗିଥିଲା । ଏହି ବର୍ଗରେ ସବୁଠାରୁ କୁତ୍ସିତ ଦେଖାଯାଉଥିବା ଡାଇନୋସର ନାମ ହେଲା- ଟିରାନୋସରାସ୍ ରେକ୍ସ । ଏଗୁଡ଼ିକ ଯେତିକି ବିଶାଳକାୟ ସେତିକି ମଧ୍ୟ ହିଂସ୍ର ଥିଲେ ।''

ଏହି ସମୟରେ ହଠାତ୍ ସାମ୍ନାରେ ପଥରୁଦ୍ଧ କଲା ଗୋଟିଏ ଅତି ବିଶାଳକାୟ 'ଷ୍ଟେଗୋସରାସ୍' । ମୁହଁ ଉପରକୁ ଉଠାଇ ସେମାନଙ୍କ ଆଡ଼କୁ ଚାହିଁ ଚାପାଶବ୍ଦରେ ସେ ନିଃଶ୍ୱାସ ଟାଣିବାକୁ ଲାଗିଲା । ଜନ୍ତୁଟି ଯେ ଏମାନଙ୍କର ଉପସ୍ଥିତି ବୁଝିପାରି ଏହିଭଳି ଉତ୍ତେଜିତ ହେବାରେ ଲାଗିଛି, ତାହା ସେମାନେ ବୁଝିପାରିଲେ ।

ରବିନ୍‌ସନ୍ କାଳବିଳମ୍ବ ନ କରି ତାଙ୍କ ହାତରେ ଥିବା ରାଇଫଲର ବଟମ ଟିପିଲେ । କିନ୍ତୁ ଆଶ୍ଚର୍ଯ୍ୟ... ଗୁଳିଚୋଟରେ ଜନ୍ତୁଟିର ଯେପରି କିଛି ହେଲା ନାହିଁ । ସେ ବିକଟ ଶବ୍ଦ କରି ଏମାନଙ୍କ ଆଡ଼କୁ ପ୍ରତିଆକ୍ରମଣ କରିବାକୁ ଆଗେଇ ଆସିଲା । ରବିନ୍‌ସନ୍ ରାଇଫଲରୁ ଗୁଳି ବର୍ଷଣ କରିବାକୁ ଲାଗିଲେ । ଏଣୁ ତାହା ଅଧିକରୁ ଅଧିକ କ୍ରୋଧାନ୍ୱିତ ହୋଇ ନିକଟତର ହେବାକୁ ଲାଗିଲା ।

ବିପଦର ଆଶଙ୍କା ବୁଝିପାରି ପ୍ରଫେସର ତା' ଉପରକୁ ଗୋଟାଏ ହାତବୋମା ଫିଙ୍ଗିଲେ । ତାହା ସଶବ୍ଦରେ ବିସ୍ଫୋରଣ ହେଲା ଏବଂ ସଙ୍ଗେ ସଙ୍ଗେ ଷ୍ଟେଗୋସରାସ୍‌ଟିର ରକ୍ତାକ୍ତ ଶରୀର ଭୂଇଁରେ ଲୋଟିପଡ଼ିଲା । ବୋମାମାଡ଼ରେ ଜନ୍ତୁର ଅର୍ଦ୍ଧେକ ଅଂଶ ନଷ୍ଟ ହୋଇଯାଇଥାଏ । କିନ୍ତୁ ଆଗ ଗୋଡ଼ରେ ଭାରାରଖି ଏହା ପୁଣି ଉଠି ଆକ୍ରମଣ କରିବାକୁ ଚେଷ୍ଟା କରୁଥିଲା । ଫଳରେ ରବିନ୍‌ସନ୍ ଗୁଳି କରି ତା'ର ମୁଣ୍ଡଟା ଉଡ଼ାଇଦେଲେ । ସେ ସମ୍ପୂର୍ଣ୍ଣ ଭାବରେ ନିଷ୍ପ୍ରାଣ ହୋଇଗଲା ।

ପ୍ରଫେସର ରବିନ୍‌ସନ୍‌ଙ୍କୁ କହିଲେ - ''ଏଥର ବୁଝିପାରୁଛ ତ' ଆମେ ସାଢ଼େ ଛଅ କୋଟି ବର୍ଷ ପୂର୍ବରୁ ରହସ୍ୟମୟ ଏହି ଅରଣ୍ୟରେ ପାଦ ଦେଇଛୁ। ତାହା ଥିଲା ଦୈତ୍ୟ ଡ଼ାଇନୋସରମାନଙ୍କର ଯୁଗ। ଏ ଅରଣ୍ୟରେ ଆମକୁ ଆହୁରି ଅନେକ ଏହିଭଳି ଜନ୍ତୁଙ୍କର ଯେ ସାମ୍ନା କରିବାକୁ ପଡ଼ିବ, ଏଥିରେ ସନ୍ଦେହ ନାହିଁ। ତଥାପି ଆମକୁ ଏହି ଅପରିଚିତ ପରିବେଶ ମଧ୍ୟରେ ରହି ଆମର ସମସ୍ତ କାର୍ଯ୍ୟ ସମ୍ପାଦନ କରିବାକୁ ପଡ଼ିବ।''



ଶିଳ୍ପୀ ଓୟାଲ୍ଟ ଡିଜ୍‌ନି ତାଙ୍କର ସ୍ୱପ୍ନର ଡିଜ୍‌ନିଲ୍ୟାଣ୍ଡ ତିଆରି କରିଥିଲେ। ଏହିଭଳି ଅନେକ ପ୍ରାଗ୍ ଐତିହାସିକ ପ୍ରାଣୀର ଆକୃତି ନେଇ। ଏଠାରେ ଦେଖାଯାଉଛି ସାଞ୍ଜୁ ଓ ଶୂଳଧାରୀ ଷ୍ଟିଗୋସରାସକୁ ଆକ୍ରମଣ କରୁଛି ଏକ ଟିରାନୋସରାସ ରେକ୍ସା।

ରବିନ୍‌ସନ୍ ପ୍ରଫେସରଙ୍କୁ କହିଲେ - ''ତାହାହେଲେ ଜୁମିନା ଟିରାନୋସରାସ୍ ରେକ୍ସା କବଳରେ ପଡ଼ିନାହିଁ ତ !''

ପ୍ରଫେସର ତାଙ୍କୁ ଆଶ୍ୱାସନା ଦେଇ କହିଲେ- ''ସେ କଥା ବହୁତ ଆଗରୁ ମୁଁ ଚିନ୍ତା କରିଛି ରବିନ୍‌ସନ୍... । ପାଦଚିହ୍ନରୁ - ଯାହା ଜଣାପଡୁଛି ସେଗୁଡ଼ିକ ମନୁଷ୍ୟ ଆକୃତିର। କେବଳ ଆକାରରେ ଖୁବ୍ ବୃହତ୍, ଏତିକି ଯାହା ଫରକ। ଡାଇନୋସରମାନଙ୍କର ପଦଚିହ୍ନ ସେଭଳି ନୁହେଁ। ଟିରାନୋସରାସ୍ ରେକ୍ସାର ପାଦରେ ତୀକ୍ଷ୍ଣ ନଖ ଥିବା ଅଂଗୁଳି ଅଛି। କିନ୍ତୁ ଜୁମିନାକୁ ଯିଏ ଅପହରଣ କରିଛି,

କୌଣସି ଏକ ମାନବ ସ୍ରୋତର ଅନ୍ତର୍ଭୁକ୍ତ ଅତିକାୟ ଶରୀର ବିଶିଷ୍ଟ ପ୍ରାଣୀ । ସାମ୍ନାସାମ୍ନି ନ ହେବା ପର୍ଯ୍ୟନ୍ତ ତା'ର ଅସଲ ପରିଚୟ ପାଇବା କଷ୍ଟକର । ମୋର ଆଶା ଯଥାଶୀଘ୍ର ତା' ସହିତ ଆମର ସାମ୍ନାସାମ୍ନି ହୋଇଯିବ ।''

ଏହା କହି କାଳବିଳମ୍ବ ନ କରି ପ୍ରଫେସର ଆଗକୁ ମାଡ଼ି ଚାଲିଲେ । ତାଙ୍କ ପଛରେ ଚାଲିଲେ ଅଭିଯାତ୍ରୀ ଦଳ । ଜୁମିନାକୁ ଯେଉଁ ବାଟଦେଇ ଦାନବଟା ନେଇଯାଇଥିଲା, ତା'ର ପଦଚିହ୍ନ ଓ ଭଙ୍ଗା ତାଳପତ୍ରକୁ ଲକ୍ଷ୍ୟ କରି ସେମାନେ ସେହି ବାଟରେ ଆଗକୁ ମାଡ଼ିଚାଲିଲେ । ଅଭିଯାତ୍ରୀ ଦଳରୁ ଜଣେ ପଛରେ ରହିଯାଇଥିଲେ । ସେ ବାରମ୍ବାର ଦଳଛଡ଼ା ହୋଇଯାଉଥିଲେ । ଦଉଡୁ ଦଉଡୁ ହଠାତ୍ ଆର୍ତ୍ତଚିତ୍କାର କରି ଏକ ଗଛ ଉପରକୁ ଉଠିଗଲେ । କିନ୍ତୁ ତଥାପି ମଧ୍ୟ ସେ ନିଜକୁ ବଞ୍ଚାଇ ପାରିଲେ ନାହିଁ । ଗୋଟାଏ ବିଶାଳକାୟ ଡାଇନୋସର ତା'ର କଣ୍ଟା ଭଳି ମୁନିଆଁ ଦାନ୍ତରେ କାମୁଡ଼ିଧରି ଗଛ ଉପରୁ ଭିଡ଼ି ଆଣିଲା ଏବଂ ତାଙ୍କୁ ଗିଳିଦେଲା । ଅଳ୍ପ କ୍ଷଣରେ ଗୋଟିଏ ମହାମୂଲ୍ୟ ଜୀବନସତ୍ତା ଲୋପ ପାଇଗଲା ।

ଲୋକଟିର ଆର୍ତ୍ତନାଦ ଶୁଣିପାରି ପ୍ରଫେସର ମୁହଁ ଫେରାଇ ଏହି ହୃଦୟ ବିଦାରକ ଦୃଶ୍ୟଟି ଦେଖିପାରିଲେ । ରବିନ୍‌ସନ୍ କମ୍ପିତ ତଥା ମ୍ରିୟମାଣ ସ୍ୱରରେ କହିଲେ - ''ହାତୀଠାରୁ ବିଶାଳ ଏହି ଅତିକାୟ ପ୍ରାଣୀଟି କେଉଁ ଡାଇନୋସର ପ୍ରଫେସର !''

ପ୍ରଫେସର କହିଲେ - ''ଯେତେପ୍ରକାର ଡାଇନୋସର ଅଛନ୍ତି, ଏହା ହେଉଛି ସେମାନଙ୍କ ମଧ୍ୟରେ ସବୁଠୁ ବଡ଼ ଆଉ ହିଂସ୍ର । ଏହାର ନାମ ହେଉଛି, 'ଟିରାନୋସରାସ୍ ରେକ୍ସ୍' । ଆକୃତି ଠିକ୍ କଙ୍ଗାରୁ ଭଳି । ଜୁରାସିକ୍ ଯୁଗର ଏମିତି ବହୁତ ଡାଇନୋସର ସହିତ ଆମେ ଧୀରେ ଧୀରେ ସାମ୍ନାସାମ୍ନି ହୋଇଯାଉଛୁ । କିନ୍ତୁ କିଏ କହିପାରିବ ଆମ୍ଭେମାନେ ଏହି ଦ୍ୱୀପରୁ ଜୀବନ ବଞ୍ଚାଇ ବାହ୍ୟ ଜଗତର ସଭ୍ୟ ସମାଜ ଆଗରେ ଏଠାକାର ଅନୁଭୂତି ବାର୍ତ୍ତା ପହଞ୍ଚାଇ ପାରିବୁ କି ନାହିଁ ?''

### ଜାୟୋଣ୍ଟୋ ଦାନବ :

ପ୍ରଫେସର ଓ ତାଙ୍କ ଅଭିଯାତ୍ରୀ ଦଳ ଆଗେଇ ଚାଲିଥାନ୍ତି ସେହି ବନାନୀ ଘେରା ପାହାଡ଼ ଅଭିମୁଖେ । କିଛି ସମୟ ପରେ ସେମାନେ ଆସି ପାହାଡ଼ର ନିମ୍ନଦେଶରେ ଥିବା ଗୋଟିଏ ହ୍ରଦ କୂଳରେ ପହଞ୍ଚିଲେ । ଅଳ୍ପଦୂରରୁ ପ୍ରଫେସର ଓ ରବିନ୍‌ସନ୍ ଗୋଟିଏ ଅଦ୍ଭୁତ ଧରଣର ଦୃଶ୍ୟ ଦେଖିପାରିଲେ ।

ନିଘଞ୍ଚ ଜଙ୍ଗଲ ଭିତରୁ ତାଳପତ୍ର ଭାଙ୍ଗି ଆଗକୁ ମାଡ଼ିଚାଲିଛି ଏକ ପାହାଡ଼ ଭଳି ଆକୃତି ଦାନବଟିଏ । ଦେହ ତା'ର ଲମ୍ବା ଲମ୍ବା ଲୋମରେ ଆବୃତ । ସେ ଜୁମିନାକୁ ଏକ କଣ୍ଢେଇ ଭଳି ଏ ହାତରୁ ସେ ହାତ କରି ଏବଂ ଥରକୁ ଥର ମୁଣ୍ଡ ପାଖକୁ ନେଇ ଆଗେଇ ଚାଲିଥାଏ । ସମୟେ ସମୟେ ଜୁମିନାକୁ ଭଲ ଭାବରେ ଦେଖୁଥାଏ ।

ରବିନ୍‌ସନ୍ ଉଲ୍ଲସିତ ହୋଇ ପ୍ରଫେସରଙ୍କୁ କହିଲେ - ''ଜୁମିନା ତା'ହେଲେ ବର୍ତ୍ତମାନ ସୁଦ୍ଧା ଜୀବିତ ହୋଇରହିଛି... ।''



ପ୍ରଫେସର କହିଲେ - ''ମୋର ମନେହୁଏ ଦାନବଟି ଜୁମିନାର କୌଣସି କ୍ଷତି କରିନାହିଁ। ସେ ଅତି ଯତ୍ନରେ ବାରମ୍ବାର ତା'ର ମୁହଁକୁ ଦେଖୁଛି। ତା' ମନରେ କୌଣସି ପ୍ରକାର ହିଂସ୍ରତାର ସୂଚନା ଦେଖାଯାଉନାହିଁ। ମନେହୁଏ ସେ ତା'ର କୌଣସି କ୍ଷତି କରିବ ନାହିଁ। ଆପଣ ମନୋବଳ ହରାନ୍ତୁ ନାହିଁ। ମୁଁ ଯେ କୌଣସି ଉପାୟରେ ହେଉ ସେହି ଦାନବ ନିକଟରୁ ଜୁମିନାକୁ ଉଦ୍ଧାର କରିଆଣିବି... ।''

ରବିନ୍‌ସନ୍ କହିଲେ - ''ଆମେ ଯେ ବର୍ତ୍ତମାନ ଅସ୍ତ୍ରହୀନ.. ।''

ପ୍ରଫେସର କହିଲେ - ''ଯେ ପର୍ଯ୍ୟନ୍ତ ମୋ ଅଣ୍ଟାରେ ଷ୍ଟିଲ୍ ନିର୍ମିତ ଛୁରୀଟି ରହିଛି, ସେତେବେଳ ଯାଏ ନିରାଶ ହେବାର କାରଣ ନାହିଁ। ଅବଶ୍ୟ ଏଭଳି ଏକ ବିଶାଳକାୟ ପ୍ରାଣୀର ମୁକାବିଲା ଲାଗି ଏହା ଯଥେଷ୍ଟ ନୁହେଁ। ତେବେ ଆମ ଭଳି ନିଃସହାୟ ମନୁଷ୍ୟ ଆପାତତଃ ଏହି ଶେଷ ଭରସା ଉପରେ ଆସ୍ଥା ରଖି ମନୋବଳ ଦୃଢ଼ କରିବା ଉଚିତ ହେବ... ।''

ସେ ପୁଣି କହିବାକୁ ଲାଗିଲେ - ''ସମ୍ଭବତଃ ସାଢ଼େ ଛଅକୋଟି ବର୍ଷ ପୂର୍ବରୁ ଏହି ଅତିକାୟ ପ୍ରାଣୀମାନେ ପୃଥିବୀପୃଷ୍ଠରେ ବିଚରଣ କରୁଥିଲେ ଏବଂ ସେଗୁଡ଼ିକ ଥିଲେ ସାଢ଼େ ତିନିଲକ୍ଷ ବର୍ଷ ତଳର ଗରିଲାମାନଙ୍କ ପୂର୍ବପୁରୁଷ। ଏହାର ନାମ ଜାୟାଣ୍ଟୋ ପିଥକାମ୍। ଉଚ୍ଚତା ପ୍ରାୟ ଦଶ ଫୁଟରୁ ଅଧିକ।

ପ୍ରାୟ ତିନି ଲକ୍ଷ ବର୍ଷ ପୂର୍ବେ ପୃଥିବୀବକ୍ଷରୁ ଏହି ସ୍ତନ୍ୟପାୟୀ ପ୍ରାଣୀର ବିଲୁପ୍ତି ଘଟିଥିଲା। ଅଥଚ ଏହି ରହସ୍ୟମୟ ଦ୍ୱୀପରେ ତା'ର ଉପସ୍ଥିତି ବିସ୍ମୟକର ମନେ ହେଉଛି। ଏଠାକାର ଏସବୁ ଘଟଣାମାନ ଡାରଉଇନ ସାହେବଙ୍କର ବିବର୍ତ୍ତନବାଦ ଏବଂ ଭୂତତ୍ତ୍ୱବିଦ୍‌ମାନଙ୍କର ଦୀର୍ଘ ସାଧନା ଫଳରେ ଉଦ୍ଧାର କରାଯାଇଥିବା ପ୍ରାକ୍-ଐତିହାସିକ ସମୟର ସମସ୍ତ ଇତିହାସର ଏହା ଅବିକଳ ପ୍ରତିଛବି। ଅତଏବ ଜୁମିନାକୁ ଉଦ୍ଧାର କରିବାକୁ ସମ୍ଭବ ନ ହେଲେ ବି ଏହି ଦ୍ୱୀପରେ ପରିଭ୍ରମଣ ଆମ୍ଭକୁ ବହୁ ଆବିଷ୍କାର ଲାଗି ଦିଗ୍‌ଦର୍ଶନ ଦେଖାଇବ।''

ତାଙ୍କ କଥାକୁ ସେଇଠି ରହିବାକୁ ଦେଇ ଆବେଗ ଓ ଉତ୍କଣ୍ଠାର ସହିତ ରବିନ୍‌ସନ୍ କହିଲେ- ''ଜାୟାଣ୍ଟୋ ଯେଉଁ ଭାବରେ ଏକ ମନରେ ଆଗକୁ ମାଡ଼ିଚାଲିଛି, ସେଥିରୁ ମନେହୁଏ ଯେ ସମ୍ଭବତଃ ଏକ ଦୁର୍ଲ୍ଲଭ ପଦାର୍ଥ ହାତରେ ପାଇଛି ବୋଲି ମନେକରି ଆନନ୍ଦ ଉଲ୍ଲାସରେ ତାକୁ ଧରି ନିଜର ବାସସ୍ଥାନକୁ ଆଗେଇ ଚାଲିଛି । ଏଣୁ ଆମ୍ଭେମାନେ ତା'ର ପଶ୍ଚାଦ୍‌ଧାବନ କରିବା ପ୍ରୟୋଜନ... ।''

ତା'ପରେ ଦ୍ରୁତ ପାଦ ବଢ଼ାଇ ପ୍ରଫେସର, ରବିନସନ୍ ଓ ଅଭିଯାତ୍ରୀ ଦଳର କେତେକ ଲୋକ ତାକୁ ଅନୁସରଣ କରିବାରେ ଲାଗିଲେ ।

ଦାନବ ଜାୟାଣ୍ଟୋ ଘନ ଜଙ୍ଗଲ ଭିତରେ ଆଗକୁ ଯାଉ ଯାଉ ତା'ର ସମ୍ମୁଖରେ ଗୋଟିଏ ବିଶାଳକାୟ ଜାନୁଆର ଗର୍ଜନ କରି ଆସି ଛିଡ଼ାହେଲା । ଅଭିଯାତ୍ରୀ ଦଳ ଏହା ଦେଖି ହତଚକିତ ହୋଇଗଲେ । ଗଣ୍ଡା ଭଳି ଦେଖିବାକୁ, ଏହି ଜନ୍ତୁଟି କିଏ !!

ପ୍ରଫେସର କହିଲେ- ''ଏହି ଜନ୍ତୁଟି ହେଲା ଟ୍ରାଇସେରାଟୋପ୍ । ଷ୍ଟୋଗୋସରାସ ଭଳି ଏମାନେ ତୃଣଭୋଜୀ ଡାଇନୋସର । ଏମାନେ ଖୁବ୍ ନିରୀହ ଓ ଶାନ୍ତ । ସମଗ୍ର ଦେହଟି ମୋଟା ଚମଡ଼ାର ଢାଲରେ ଆବୃତ । ନାକ ଉପରେ ବାହାରିଛି ଖଡ୍‌ଗ ଭଳି ଅଂଗଟିଏ । ଶତ୍ରୁ କବଳରୁ ରକ୍ଷା ପାଇଁ ପ୍ରକୃତି ତା' ଶରୀରକୁ ଏହିଭଳି ଆବୃତ କରି ରଖିଛି ।


ଡାକବିଲ୍ ବା ହଂସଚଞ୍ଚୁ ଡାଇନୋସର ପ୍ୟାରାସୋରୋଲୋଫାସର ଜୀବାଶ୍ମ ।

ଟ୍ରାଇସେରାଟୋପ୍ ରାସ୍ତା ଅବରୋଧ କରିବାର ଦେଖି ଜାୟାଣ୍ଟୋ କ୍ରୋଧରେ ଗର୍ଜନ କରିବାକୁ ଲାଗିଲା । ଜୁମିନାକୁ ଏକ ବଡ଼ ପଥର ଉପରେ ବସାଇଦେଇ ଦୁଇ ହାତରେ ଦୁଇଟି ପଥର ଧରି ଜନ୍ତୁଟିର ମୁଣ୍ଡକୁ ଛେଚି ଦେଲା ଏବଂ ତା' ବେକକୁ ଧରି ତାକୁ ମାଟିତଳେ ଗଡ଼ାଇଦେଲା ।

କିଛି ସମୟ ପରେ ଜନ୍ତୁଟି କିନ୍ତୁ ଉଠିପଡ଼ି ଭୟରେ ହ୍ରଦର ଜଳଧାରା ପାଖେ ପାଖେ ପଳାଇଗଲା । ଜାୟାଣ୍ଟୋ ବିଜୟ ଉଲ୍ଲାସରେ ଛାତିରେ ହାତ ବାଡ଼େଇ ନାଚିବାକୁ ଲାଗିଲା । ତା' ପରେ ଜୁମିନାକୁ ପୂର୍ବବତ୍ ଧରି ହ୍ରଦର ଆରପଟକୁ ଚାଲିଗଲା ।

ହ୍ରଦର ଦୁଇପାଖରେ ପାହାଡ଼ । ସେ ଦୁଇଟି ମଧ୍ୟରେ ଯୋଗାଯୋଗ ରକ୍ଷା କରୁଥାଏ ଉପୁଡ଼ି ପଡ଼ିଥିବା ଏକ ଅତି ବିରାଟ ଗଛ । ତାହାରି ଉପର ଦେଇ ପ୍ରଫେସର ସଦଳବଳେ ହ୍ରଦ ପାରହୋଇ ଗଲେ । ସେମାନେ ଖୁବ୍ ସତର୍କତାର ସହିତ ଅଗ୍ରସର ହେବାକୁ ଲାଗିଲେ । କୌଣସି ଉପାୟରେ ଯଦି ଜାୟାଣ୍ଟୋ ସେମାନଙ୍କର ଉପସ୍ଥିତି ଜାଣିପାରିବ, ତାହାହେଲେ ମୃତ୍ୟୁ ସୁନିଶ୍ଚିତ । ସେହି କାରଣରୁ ଏକ ନିର୍ଦ୍ଦିଷ୍ଟ ଦୂରତ୍ୱ ରଖି ଆଗେଇବାକୁ ହେଉଥାଏ ।

କିନ୍ତୁ ଏହା ବେଶୀ ସମୟ ସମ୍ଭବ ହୋଇପାରିଲା ନାହିଁ । ଜାୟାଣ୍ଟୋ ଚାଲୁ ଚାଲୁ ଗୋଟିଏ ପଥରର ଆଢୁଆଳରେ ପହଞ୍ଚି ଯାଇଥିଲା । ତାକୁ ଅନୁସରଣ କରିବାକୁ ଯାଇ ପ୍ରଫେସର ଓ ରବିନ୍‌ସନ୍ କିଛିବାଟ ଆଗେଇ ଯାଇଥିଲେ । ସେମାନଙ୍କ ପାଦ ଚାପରୁ ଗଛପତ୍ର ଖସ୍ ଖସ୍ ଶବ୍ଦ ଜାୟାଣ୍ଟୋର ସତର୍କ କାନରେ ବାଜିଲା । ପଛକୁ ଚାହିଁ ସେ ପ୍ରଫେସରଙ୍କ ଦଳକୁ ଦେଖିବାକୁ ପାଇଲା । ଏହା ଦେଖି ସେମାନେ ପ୍ରାଣଭୟରେ ପଛକୁ ଫେରି ଦଉଡ଼ିବାକୁ ଲାଗିଲେ । ରାସ୍ତାରେ ବହୁତ ବଡ଼ ବଡ଼ ପଥର ଖୋଲମାନ ଥିଲା । ହଠାତ୍ ରବିନ୍‌ସନ୍ ମଥା ଉପରେ ଝୁଲୁଥିବା ଏକ ଲତାକୁ ଜୋର କରି ଧରି ପାହାଡ଼ ଧାରରେ ଥିବା ଏକ ବିରାଟ ଖୋଲ ଭିତରେ ଲୁଚିରହିଲା । ପ୍ରଫେସର ମଧ୍ୟ ସେହି ପନ୍ଥା ଅବଲମ୍ବନ କଲେ । ନିଜକୁ କୌଣସି ପ୍ରକାରେ ସମ୍ଭାଳି ନେବାପରେ ରବିନସନ୍ ନିକଟରେ ପ୍ରବାହିତ ଜଳଧାର ଆଡ଼କୁ ଦୃଷ୍ଟି ଫେରାଇଲେ । ସେ ଦେଖିଲେ ଯେ ବିଭିନ୍ନ ଦିଗରୁ



ସେହିପ୍ରକାର ଜଳଧାରମାନ ଗଡ଼ିଯାଇ ଗୋଟିଏ ସ୍ଥାନରେ ମିଶିଛନ୍ତି । ସେ ସ୍ଥାନଟି ଏକ ହ୍ରଦ ଭଳି ହୋଇଛି ଏବଂ ସେଠାରେ ଜଳ ସ୍ଥିର ଅଛି ।

ସେହି ସ୍ଥିର ଜଳକୁ ନିରୀକ୍ଷଣ କରିବା ପରେ ରବିନ୍‌ସନ୍‌ଙ୍କ ହଲକ ଶୁଖିଗଲା । ତାହା ଥିଲା ଏକ ଅତି ବିଭତ୍ସ ଦୃଶ୍ୟ । ସେଠାରେ ବହୁ ସଂଖ୍ୟାରେ କୁମ୍ଭୀର ଓ ଅନ୍ୟାନ୍ୟ ଆକୃତିର ଜଳଚରପ୍ରାଣୀମାନେ ବିଚରଣ କରୁଥିଲେ ଏବଂ ମୁଣ୍ଡଟେକି ଉପରକୁ ଚାହିଁଥିଲେ । ଏହା ତାଙ୍କୁ ଏକ 'ମୃତ୍ୟୁର ଗର୍ଭ' ଭଳି ମନେହେଲା । ସେମାନଙ୍କୁ ଦେଖି କୁମ୍ଭୀରମାନେ ଖାଇବା ଆଶାରେ ଏପଟ ସେପଟ ହୋଇ ଧାଇଁବାକୁ ଲାଗିଲେ ଏବଂ ମନୁଷ୍ୟର ଗନ୍ଧ ବାରିପାରି ପାଟିମେଲା କରି ଗର୍ଜନ କରିବାରେ ଲାଗିଲେ ।

ପ୍ରଫେସରଙ୍କର ସହକର୍ମୀମାନେ ଜାୟାଣ୍ଟୋ ଭୟରେ ସେହି ଗଛଟି ଉପରେ ଆଶ୍ରୟ ନେଇଥାନ୍ତି । ଠିକ୍ ସେତିକିବେଳେ ଲମ୍ବା ଲମ୍ବା ପାଦ ପକାଇ ଜାୟାଣ୍ଟୋ ସେଠାକୁ ଆସି ସେହି ଗଛକୁ ଗୋଟିଏ ହାତରେ ଗଡ଼ାଇବାକୁ ଚେଷ୍ଟା କଲା । ଏଥିରେ ଅସଫଳ ହେବାରୁ ସେ ଜୁମିନାକୁ ଗୋଟିଏ ଗଛ ଉପରେ ଆସ୍ତେ କରି ରଖିଦେଲା । ତାହାପରେ ଖୁବ୍ ଜୋର୍ ଗର୍ଜନ କରି ଦୁଇ ହାତରେ ଗଛର ଗୋଟିଏ ପଟକୁ ଉପରକୁ ଟେକି ଧରିଲା । ଫଳରେ ସେଥିରେ ଥିବା ଲୋକେ ପ୍ରାଣ ଭୟରେ ଚିତ୍କାର କରି ସେହି ଜୀବନ୍ତ ନରକକୁଣ୍ଡ ଭିତରକୁ ଗଳିପଡ଼ିଲେ ଏବଂ ସଙ୍ଗେ ସଙ୍ଗେ ସେଠାରେ ଥିବା କୁମ୍ଭୀରମାନଙ୍କର ଆହାର ହୋଇଗଲେ ।

କେବଳ ସେମାନଙ୍କ ମଧ୍ୟରୁ ଜଣେ ଛିଟିକି ଯାଇ ଗୋଟିଏ ଜଳଧାରରେ ଥିବା ପଙ୍କରେ ପଡ଼ିଗଲା । ସେ ପ୍ରାଣ ବିକଳରେ ଉବୁଟୁବୁ ହେଉଥାଏ । ଏତିକି ସମୟରେ ଅତିକାୟ ମାଙ୍କଡ଼ସା ଆକୃତିର ଜୀବମାନେ ତାକୁ ଆକ୍ରମଣ କରି ମହାଆନନ୍ଦରେ ଝୁଣି ଝୁଣି ଖାଇବାକୁ ଲାଗିଲେ ।

## ଜାୟାଣ୍ଟୋ ସହିତ ମୁକାବିଲା :

ରବିନସନ୍ ଓ ପ୍ରଫେସର ପାହାଡ଼ ଖୋଲରେ ମୁଣ୍ଡରଖି ଏହିସବୁ ଦୃଶ୍ୟମାନ ଦେଖିପାରୁଥିଲେ । ଭୟରେ ସେମାନେ ଥରୁଥାନ୍ତି । ଏହି ସମୟରେ ଗୋଟିଏ ବିଚିତ୍ର ଜନ୍ତୁ ଲତାଟିଏ ସାହାଯ୍ୟରେ ଝୁଲି ଝୁଲି ସେହି ଗର୍ତ୍ତ ଆଡ଼କୁ ଆସିବାର ଦେଖାଗଲା । ଏଣୁ ରବିନ୍‌ସନ୍ ମୁଣ୍ଡ ଉପରକୁ ଉଠାଇ ସେହି ଲତାଟିକୁ କାଟିଦେଲେ ।

କିନ୍ତୁ ହାୟ, ଜଣକ ପାଖରୁ ବଞ୍ଚିବା ପାଇଁ ଚେଷ୍ଟାକରି ଅନ୍ୟର ଶିକାର ହେବାହିଁ ସାର ହେଲା । ଅର୍ଥାତ୍ ଜାୟାଣ୍ଟୋ ଏହି ଦୃଶ୍ୟ ଦେଖିପାରିଲା । ତତ୍‌କ୍ଷଣାତ୍ ସେ ସେଠାକୁ ଆସି ନଇଁ ପଡ଼ି ଖୋଲ ଆଡ଼କୁ ତା'ର ଲମ୍ବା ହାତ ବଢ଼ାଇଦେଲା । ଏହି ସମୟରେ ପ୍ରଫେସର ଚିତ୍କାର କରି କହିଲେ - "ରବିନ୍‌ସନ୍ ! ହୁସିଆର, ଜାୟାଣ୍ଟୋ ଜାଣିସାରିଲାଣି ଯେ ଆମେ ଏହି ଗର୍ତ୍ତ ଭିତରେ ଅଛୁ ।" ଏଣୁ ରବିନ୍‌ସନ୍ ମଥା ତଳକୁ କରି ଗୁହା ଭିତରେ ଜାକି ହୋଇ ରହିଥିଲେ । ଜାୟାଣ୍ଟୋ ତାଙ୍କ ବାଳ ଧରିବାକୁ ଚେଷ୍ଟା କରୁଥିଲା କିନ୍ତୁ ପାରିଲା ନାହିଁ ।



ରବିନ୍‌ସନ୍ ଭାବିଲେ, ନିଶ୍ଚିତ ମୃତ୍ୟୁ ପଥର ଯାତ୍ରୀ ହୋଇସାରିଛନ୍ତି । ତେଣୁ ମନରେ ସାହସ ବାନ୍ଧି ସେ ଅଣ୍ଟାରୁ ଛୁରୀ ବାହାର କରିବାରେ ଲାଗିଲେ । ପୁଣି ଜାୟାଣ୍ଟୋ ଯେତେବେଳେ ଖୋଲ ଭିତରକୁ ହାତ ବଢ଼ାଇଲା, ଠିକ୍ ସେତିକିବେଳେ ରବିନ୍‌ସନ୍ ଅଣ୍ଟାରୁ ଛୁରୀକୁ ବାହାର କରି ସମସ୍ତ ଶକ୍ତି ପ୍ରୟୋଗ କରି ତା' ହାତରେ ବିଦ୍ଧ କଲେ । ଫଳରେ ଦାନବର ହାତରୁ ରକ୍ତ ବାହାରି ରବିନ୍‌ସନ୍‌ଙ୍କ ଦେହ ଓ ମୁହଁରେ ପଡ଼ିଲା । ଜାୟାଣ୍ଟୋ ଭୟଙ୍କର ଗର୍ଜନ କରି ହାତ ଫେରାଇନେଲା । ରବିନ୍‌ସନ୍‌ଙ୍କର ଛୁରୀଟି ସେଥିରେ ଆମୂଳଚୂଳ ବିଦ୍ଧ ହୋଇଯାଇଥିଲା । ଏହାପରେ ତା'ର କ୍ରୋଧ ଓ ଗର୍ଜନରେ ଚାରିଆଡ଼ ଥର ଥର ହୋଇ କମ୍ପିବାକୁ ଲାଗିଲା ।

ଗଛ ଉପରେ ବସିରହି ଜୁମିନା ଭୀତବିହ୍ୱଳ ନୟନରେ ଜାୟାଣ୍ଟୋର କାର୍ଯ୍ୟକଳାପ ଦେଖି ପାରୁଥିଲା । ଗୋଟିଏ ଜଙ୍ଗଲୀ ଦାନବର ହାତରେ ଧରାପଡ଼ି କିଭଳି ଭାବରେ ଏ ପର୍ଯ୍ୟନ୍ତ ବଞ୍ଚି ରହିଛି ସେ ତାହା ଚିନ୍ତା କରୁଥିଲା । ଦାନବର ହାତରେ ଏବଂ ତା'ର ମୁଣ୍ଡ ଉପରେ ବସି ଭୟ ଓ ଆତଙ୍କରେ ସମୟେ ସମୟେ ଜ୍ଞାନ ହରାଇ ପକାଉଥିଲେ । ନିଜର ଜ୍ଞାନ ଅବସ୍ଥାରେ ମଧ୍ୟ ଦାନବଟି ତା'ର ଅଙ୍ଗରେ କୌଣସି ପ୍ରକାରର ଆଘାତ କରିବାର ଦେଖି ନାହିଁ । ଯେତେବେଳେ ଦାନବର ଉତ୍କଟ ଗନ୍ଧ ନିଃଶ୍ୱାସରେ ଜୁମିନା ନିଜ ମୁହଁକୁ ଏପଟ ସେପଟ କରିଛି, ଏତିକିବେଳେ ଜାୟାଣ୍ଟୋ ଦାନବଟି ତା'ର ମୁଖମଣ୍ଡଳକୁ ମମତାର ଦୃଷ୍ଟିରେ ଚାହିଁ ରହିଛି । ସେହି ଦୃଷ୍ଟି ଭିତରେ ହିଂସ୍ରତାର ଆଭାସ ଟିକେ ହେଲେ ବି ନ ଥିଲା ।

ତେବେ ମଧ୍ୟ ଜୁମିନା ବୁଝି ପାରୁ ନ ଥାଏ ଯେ, ଦାନବଟା ଅତି ସତର୍କ ଓ ଯତ୍ନର ସହିତ ତାକୁ କୁଆଡ଼େ ନେଇଯାଉଛି । ସେ ବୁଝିପାରୁ ନଥାନ୍ତି ତା'ର ଭବିଷ୍ୟତ କଣ ? ତା'ର



ସ୍ୱାମୀ ଓ ଅଭିଯାତ୍ରୀ ଦଳ ତାକୁ ଏହି ଦାନବ ନିକଟରୁ ଉଦ୍ଧାର କରିପାରିବେ କି ନାହିଁ । ତା'ର ଚିନ୍ତିତ ମନ ସବୁବେଳେ ତାକୁ ଦୁର୍ବଳ ଓ ହତାସ କରି ପକାଉଥାଏ । ମୃତ୍ୟୁର ଭୟ ତା'ର କଣ୍ଠରୁଦ୍ଧ କରିଦେଉଥାଏ । କିନ୍ତୁ ଏତେ ସମୟ ପରେ ତା'ର ମନରେ କିଛିଟା ଆଶ୍ୱାସନାର ଆଭାସ ଜାଗି ଉଠିଲା । ସେ ଭାବିଲା ଯେ, ଯେ ପର୍ଯ୍ୟନ୍ତ ଏହି ଦାନବ ନିକଟରେ ରହିଥିବ, ସେ ପର୍ଯ୍ୟନ୍ତ ବାହାରର କୌଣସି ଜନ୍ତୁ ବା ଶତ୍ରୁ ତା'ର ସାମାନ୍ୟ ମାତ୍ର ଅନିଷ୍ଟ କରିପାରିବେ ନାହିଁ । ତାକୁ ଦାନବଟି ନିରାପତ୍ତା ସ୍ଥାନରେ ରଖିବାକୁ ଚେଷ୍ଟା କରିବ । ଏହି ଆଶ୍ୱସ୍ତ ଭାବନା ତା'ର ମନରେ କିଛିଟା ସାହସ ସଞ୍ଚାର କଲା । ସାହସିକ ଓ ଦୃଢ଼ ସଚେତନ ମନ ମାତ୍ର କେଇ ଘଣ୍ଟା ପରେ ତା'ର ମନରେ ଉପୁଜୁଥିବା ଅହେତୁକ ଚିନ୍ତାଧାରାକୁ ପରିବର୍ତ୍ତନ ଘଟାଇଥିଲା ।

କିଛି ସମୟ ପରେ ଦାନବଟି ଜୁମିନାକୁ ଗଛ ଉପରୁ ଉଠାଇ ନେଇ ନିରାପଦ ଅନ୍ୟ ଏକ ଜାଗାରେ ବସାଇଦେଇ କ୍ରୋଧରେ ଗର୍ଜନକରି ପଛକୁ ଦୌଡ଼ି ଚାଲିଗଲା । ଜୁମିନା ବୁଝିପାରିଲା ଯେ,

ସେ ଏହା ମଧରେ କୌଣସି ଶତ୍ରୁର ଆଭାସ ପାଇ ସାରିଛି । ସେ ଚିନ୍ତା କଲା- ଏହି ସୁଯୋଗରେ ଲୁଚି ଲୁଚି ଏଠୁ ଖସି ପଳାଇଲେ କେମିତି ହୁଅନ୍ତା ?

ପରକ୍ଷଣରେ କିନ୍ତୁ ସେହି ଚିନ୍ତା ବଦଳାଇ ସେ ଭାବିଲା - ଏହି ଅଜ୍ଞାତ ରହସ୍ୟମୟ ଅରଣ୍ୟରେ ଯେଉଁ ଜୀବଜନ୍ତୁମାନେ ତା' ନଜରରେ ପଡ଼ିଛି ସେଗୁଡ଼ିକ ଖୁବ୍ ହିଂସ୍ର । ତେଣୁ ପଳାଇ ଯାଇ ଯଦି ସେ ଅନ୍ୟ ହିଂସ୍ର ଜନ୍ତୁ ହାବୁଡ଼ରେ ପଡ଼େ ତା' ହେଲେ ସର୍ବନାଶ । ମହରଗରୁ ଯାଇ କାନ୍ତାରରେ ପଡ଼ିବା ହିଁ ସାର ହେବ । ଏଣୁ ଯେ ପର୍ଯ୍ୟନ୍ତ ଦାନବ ଏଠାକୁ ନ ଆସୁଛି, ଏହିଠାରେ ବସିରହିବା ହିଁ ବୁଦ୍ଧିମାନର କାମ ହେବ । ଭାଗ୍ୟ ହାତରେ ଭବିଷ୍ୟତକୁ ସମର୍ପି ଦେଇ ସେ ସେହିଠାରେ ରହିଲା ।

ଜୁମିନା ଏହିଭଳି ନାନାପ୍ରକାର ଚିନ୍ତାରେ ବୁଡ଼ି ରହିଥିବା ବେଳେ ହଠାତ୍ ମନୁଷ୍ୟର ଆର୍ତ୍ତନାଦ ଭଳି ଗର୍ଜନ ଶୁଭିଲା । ସେ ଭାବିଲା ହୁଏତ କେଉଁ ଭୟଙ୍କର ଜୀବର କବଳରେ ଅଭିଯାତ୍ରୀ ଦଳମାନଙ୍କର ପ୍ରାଣ ବିପନ୍ନ ହେବାରେ ଲାଗିଛି । ସେ ଭାବୁଥିଲା ରବିନ୍‌ସନ୍ କିଛି ବିପଦରେ ପଡ଼ିଲେ କି ? ନାନା କଥା ଚିନ୍ତା କରି ସେ ଖୁବ୍ ଅସ୍ତବ୍ୟସ୍ତ ହୋଇପଡ଼ିଲା ।

ସେ ଗୋଟିଏ ଗଛର ଡ଼ାଳ ସାହାଯ୍ୟରେ ବହୁତ ଉପରକୁ ଉଠି ଚାରିଆଡ଼କୁ ଆଖି ଫେରାଇଲା । ଏହି ସମୟରେ ପୁଣି ଦାନବର ଗମ୍ଭୀର ଗର୍ଜନ ଶୁଣି ଜୁମିନା ପୂର୍ବବତ୍ ନିଜ ସ୍ଥାନକୁ ଫେରିଆସିଲା । କିନ୍ତୁ ତୀବ୍ର ମାନସିକ ଚିନ୍ତା ଓ ଭୟରେ ସେ ପୁଣି ଜ୍ଞାନ ହରାଇ ବସିଲା । କିଛି ସମୟ ପରେ ଅରଣ୍ୟର ଶୀତଳ ଜଳବାୟୁ ସଂସ୍ପର୍ଶରେ ଜୁମିନାର ଜ୍ଞାନ ଫେରି ଆସିଲା ।

ତା'ପରେ ସେ ସାମାନ୍ୟ ଦୂରକୁ ଦୃଷ୍ଟି ପକାଇ ଦେଖିବାକୁ ପାଇଲେ ଜ୍ୱଳନ୍ତ ଆଖିରେ ଭୟଙ୍କର ଡାଇନୋସରଟିଏ ତାଙ୍କ ଆଡ଼କୁ ସ୍ଥିର ଦୃଷ୍ଟିରେ ଚାହିଁ ରହିଛି । କିନ୍ତୁ ଏହି ଡାଇନୋସରଟି



ପିଠି ଉପରେ ସାଞ୍ଜୁ ଓ ଲାଞ୍ଜରେ ଶୂଳ - ଏହା ହେଉଛି ଷ୍ଟିଗୋସରାସ । ଏହାର ମଥାଠାରୁ ଲାଞ୍ଜ ପର୍ଯ୍ୟନ୍ତ ହାଡ଼ର ପାତ ଧାଡ଼ି ଧାଡ଼ି ହୋଇ ସଜା ହୋଇଥିଲା ପରି ଦିଶେ । ଏହାକୁ ସେ ଇଚ୍ଛା ଅନୁଯାୟୀ ବ୍ୟବହାର କରିପାରୁଥିଲା ।

କେଉଁ ପ୍ରଜାତିର ଜାଣିବାର ଜ୍ଞାନ ତା'ର ନାହିଁ। ଏହି ସମୟରେ ଯଦି ପ୍ରଫେସର ପାଖରେ ଥାଆନ୍ତେ, ତା' ହେଲେ ତାଙ୍କର ନମ୍ର, ସୁଲଳିତ କଣ୍ଠରେ ବୁଝାଇ ଦେଇ କହିଥାନ୍ତେ, ଏହିମାନେ ହିଁ ହେଉଛନ୍ତି 'ଟିରାନୋସରାସ୍ ରେକ୍ସ'।

ଜନ୍ତୁଟିର ଅତି ବିଶାଳକାୟ ଶରୀରଟି ମୋଟା ଚମଡ଼ାରେ ଆବୃତ। ନଖଗୁଡ଼ିକ ତୀକ୍ଷ୍ଣ ଅସ୍ତ୍ର ଭଳି ଦେଖାଯାଉଥାଏ। ଛାତିଠାରୁ ଦୁଇଟି ହାତ ବାହାରିଲା ପରି ଦେଖାଯାଉଥାଏ। ଗୋଡ଼ ଓ ହାତର ନଖଗୁଡ଼ିକ ଶତ୍ରୁକୁ ଆକ୍ରମଣ କରିବା ଲାଗି ଯେପିରିକି ସଦା ପ୍ରସ୍ତୁତ ହୋଇ ରହିଥାଆନ୍ତି। ଏହି ବିଶାଳକାୟ ଜନ୍ତୁଟି ଗର୍ଜନ କରି ଜୁମିନା ଆଡ଼କୁ ଅଗ୍ରସର ହେଉଥାଏ।

ଜୁମିନା ଅତି ଭୟାର୍ତ୍ତରେ ଚିତ୍କାର କରିବାକୁ ଲାଗିଲା। ସେ ଚିନ୍ତା କଲା ବର୍ତ୍ତମାନ ମୋ ନିକଟରେ ଦାନବ ନାହିଁ। ତେଣୁ ଏହି ଜନ୍ତୁଟି ଦ୍ୱାରା ମୃତ୍ୟୁ ମୋର ସୁନିଶ୍ଚିତ। ଦାନବ ଥିଲେ ନିଶ୍ଚୟ ଏହି ଡାଇନୋସର କବଳରୁ ମୋତେ ରକ୍ଷା କରିଥାଆନ୍ତା।

ଜାୟାଣ୍ଟୋର ହାତରୁ ରକ୍ତ ଝରୁଥାଏ ଏବଂ ସେ ଗର୍ଜନ କରୁଥାଏ। ପୁଣି ସେହି ନଦୀ ଉପରେ ଓଲଟି ପଡ଼ିଥିବା ଗଛ ନିକଟରେ କ୍ରୋଧରେ ଅରଣ୍ୟ କମ୍ପାଇ ଶତ୍ରୁକୁ ପ୍ରତିଆକ୍ରମଣ କରିବା ପାଇଁ ଏଆଡ଼େ ସେଆଡ଼େ ଦଉଡୁ ଥାଏ। ଏହା ମଧ୍ୟରେ ଯାହାହେଉ ଜୁମିନାର ଆର୍ତ୍ତନାଦ ଶୁଣି ତା'ର ରକ୍ତାକ୍ତ ହାତର କଷ୍ଟ କଥା ଭୁଲି ଯାଇ ଜୁମିନାକୁ ଛାଡ଼ି ଆସିଥିବା ସ୍ଥାନକୁ ଫେରିଲା। ଫେରିବା ବାଟରେ ତା'ର ନଜର ପଡ଼ିଲା ଟିରାନୋସରରାସ୍ ରେକ୍ସ ଉପରେ।

## ଜାୟାଣ୍ଟୋ-ଟିରାନୋସରାସ୍ ଖଣ୍ଡଯୁଦ୍ଧ :

ରବିନ୍‌ସନ୍‌ଙ୍କ ବଦଳରେ ଜାୟାଣ୍ଟୋର ସମସ୍ତ ରାଗ ଟିରାନୋସରାସ୍ ରେକ୍ସ ଜନ୍ତୁଟି ଉପରେ କେନ୍ଦ୍ରୀଭୂତ ହେଲା। ଜୁମିନା ଉପରେ ସାମାନ୍ୟ ଦୃଷ୍ଟି ପକାଇ ଦାନବଟି ବହୁତ ଉପରକୁ ଲମ୍ଫ ପ୍ରଦାନ କଲା। ସେ ମଧ ପ୍ରତିଆକ୍ରମଣ କରିବା ପାଇଁ ତୟାର ହୋଇ ରହିଥିଲା। ତେଣୁ ଦୁହିଁଙ୍କ ମଧ୍ୟରେ ଖଣ୍ଡ ଯୁଦ୍ଧ ଲାଗିଗଲା। ଟିରାନୋସରାସ୍ ପଛଗୋଡ଼ ଦ୍ୱାରା ଜାୟାଣ୍ଟୋର ପାହାଡ଼ ଭଳି ଶରୀରକୁ ଖଣ୍ଡେ ଦୂରକୁ ଫିଙ୍ଗିଦେଲା। ତଳେ ପଡ଼ି ଜାୟାଣ୍ଟୋର କ୍ରୋଧ ଶହେଗୁଣ ବଢ଼ିଗଲା। ଆହୁରି ତୀବ୍ର ଗର୍ଜନ କରି ଆଖିପିଛୁଳାକେ ସେ ଉଠିପଡ଼ି ଡାଇନୋସର ଉପରକୁ ଝାମ୍ପିପଡ଼ି ତାକୁ କୁଣ୍ଢାଇ ଧରିଲା। ତା' ପରେ ଅଦ୍ଭୁତ କୌଶଳରେ ତା'ର ଗୋଟିଏ ହାତକୁ ଧରି ଏଭଳି ମୁଥାଟିଏ ମାରିଲା ଯେ ଜନ୍ତୁଟା ପୁରାପୁରି କଚାଡ଼ି ହୋଇପଡ଼ିଲା। ମାଟି କମ୍ପି ଗଗନ ପବନ ପ୍ରତିଧ୍ୱନିତ ହୋଇଗଲା। ଜୁମିନା ଏହିସବୁ ଦେଖି କ୍ଷଣକୁ କ୍ଷଣ ଜ୍ଞାନ ହରାଇ ପକାଉଥାଏ। ତାହାରି ସମ୍ମୁଖରେ ଏହିଭଳି ଦୁଇଟି ବିଶାଳ ଜୀବଙ୍କର ଦ୍ୱନ୍ଦ୍ୱ ଯୁଦ୍ଧ ଫଳରେ ଓ କ୍ରୋଧ ଗର୍ଜନ ଫଳରେ ବନଭୂମି କମ୍ପି ଉଠୁଥାଏ।

ଅଜଣା ଆଶଙ୍କାରେ ଜୁମିନାର ମନ ବ୍ୟାକୁଳ ହେବାକୁ ଲାଗିଲା। ତା' ରକ୍ଷାକର୍ତ୍ତା ଯଦି ଡାଇନୋସର ଦ୍ୱାରା ଦ୍ୱନ୍ଦ୍ୱ ଯୁଦ୍ଧରେ ମୃତ୍ୟୁବରଣ କରେ, ତା'ହେଲେ ତା'ର ପରିଣାମ କ'ଣ ହେବ ?



ଟିରାନୋସରାସର ଜୀବାଶ୍ମ । ମାଂସାଶୀ ପ୍ରାଣୀମାନଙ୍କ ମଧ୍ୟରେ ଏହାର ଆକାର ଥିଲା ସବୁଠାରୁ ବଡ଼ ଏବଂ ସ୍ୱଭାବ ଖୁବ୍ ହିଂସ୍ର ।

ତାକୁ କିଏ ରକ୍ଷା କରିବ ? କିଛି ସମୟ ପରେ ଜୁମିନା ନିଜକୁ ସଂଯତ କରି ନିଜେ ନିଜକୁ ବଞ୍ଚାଇବାକୁ ଚିନ୍ତା କଲା । ସେ ଭାବିଲା ଦୁଇ ଜନ୍ତୁ ଦ୍ୱନ୍ଦ୍ୱ ଯୁଦ୍ଧରେ ଲିପ୍ତ ଥିବାବେଳେ ଏଠାରୁ ଖସି ପଳାଇବ । ତେଣୁ ତରତର ହୋଇ ଦୁଇଜଣଙ୍କ ଆଖି ଉହାଡ଼ରୁ ଦଉଡ଼ି ପଳାଇବାକୁ ପ୍ରୟାସ କଲା । କିନ୍ତୁ ଜାୟାଣ୍ଟୋ ତା' ଉପରେ ସମ୍ପୂର୍ଣ୍ଣ ନଜର ରଖିଥାଏ । ସେ ଭାବିଲା ଜୁମିନା ହୁଏତ ଖୁବ୍ ଭୟଭୀତ ହୋଇଯାଇଛି । ତେଣୁ ହଠାତ୍ ତା' ପାଖକୁ ଆସି ଗୋଟିଏ ହାତରେ ତାକୁ ଉଠାଇ ନେଇ ଗୋଟିଏ ଗଛର ନିରାପଦ ଜାଗାରେ ବସାଇଦେଲା ।

ତା'ପରେ ସେ ପୁଣି ଡାଇନୋସର ସହିତ ସଂଘର୍ଷରେ ଲାଗିଗଲା । ଦୁଇଜଣ ରକ୍ତାକ୍ତ ହୋଇ ଗର୍ଜନ କରି ଦୀର୍ଘ ନିଃଶ୍ୱାସ ଛାଡୁଥାନ୍ତି । ଟିରାନୋସରାସ୍ ଦୁଇପାଦରେ ଛିଡ଼ା ହୋଇ ତା'ର ଦୁଇ ହାତରେ ଜାୟାଣ୍ଟୋକୁ ଧରିବା ପାଇଁ ଏପଟସେପଟ ହୋଇ ଆକ୍ରମଣ କରୁଥାଏ । କିଛି ସମୟ ପରେ ସେ ତା'ର କ୍ଷୁଦ୍ରହାତ ଦୁଇଟିରେ ତୀକ୍ଷ୍ଣ ନଖ ସାହାଯ୍ୟରେ ତାକୁ କୁଣ୍ଢାଇ ଧରିବାରେ ସଫଳ ହେଲା ଏବଂ ତୀକ୍ଷ୍ଣ ଦାନ୍ତ ଦ୍ୱାରା ଗଳାକୁ କାମୁଡ଼ି ଦେବାକୁ ଚେଷ୍ଟାକଲା ।

ଜାୟାଣ୍ଟୋ ମଧ୍ୟ ତା'ର ଶକ୍ତିଶାଳୀ ହାତ ଦୁଇଟି ଦ୍ୱାରା ଟିରାନୋସରାସ୍‌ର ପେଟ ଓ ଛାତିରେ ମୁଥା ମାରିଲା । ଫଳରେ ସେ ତାହା କରିବାକୁ ସକ୍ଷମ ହେଲା ନାହିଁ । ତେଣୁ ରାଗରେ ତାକୁ କଚାଡ଼ି ଦେଲା ।



ବ୍ରଡେଟାସରାସର ଜୀବଶ୍ମ : ପ୍ରଧାନତଃ ଏମାନେ ଜଳାଶ୍ରୟମାନଙ୍କରେ ଆଶ୍ରୟ ନେଉଥା'ନ୍ତି । ଗଛର ଲଟା ଓ କଅଁଳିଆ ପତ୍ର ଖାଆନ୍ତି । ନାକର ଅଗ୍ରଭାଗରୁ ପାଖରୁ ଲାଞ୍ଜ ପର୍ଯ୍ୟନ୍ତ ଲମ୍ୱ ହେଉଛି ଅଶୀ ଫୁଟ ।

ମାଟି ଉପରେ ପଡ଼ି ଜାୟାଣ୍ଟୋ ଅଭିନୟ କରିବାକୁ ଲାଗିଲା, ସତେ ଯେପରି ତା' ମେରୁଦଣ୍ଡ ଭାଙ୍ଗିଯାଇଛି ଏବଂ ଆଉ ସେ ଉଠିପାରୁ ନାହିଁ । ତା'ର ଏଭଳି ଅବସ୍ଥା ଦେଖି ଡାଇନୋସର ତା' ଚାରିପାଖରେ ଘୂରିବାକୁ ଲାଗିଲା ଏବଂ ତା' ଶରୀରରୁ ରକ୍ତ ଝରୁଥିବା ସ୍ଥାନଗୁଡ଼ିକୁ ଜିଭରେ ଚାଟିଲା । ଜାୟାଣ୍ଟୋ ଆଉ ଉଠିବାକୁ ଚେଷ୍ଟା କଲାନାହିଁ । କାରଣ, ଉଠିଲେ ସେହି ଜାନୁଆର ତା' ବେକକୁ ନିଶ୍ଚୟ କାମୁଡ଼ି ଧରିବ । ତେଣୁ କିଛି ସମୟ ସେହିପରି ପଡ଼ି ରହିଲା । କିନ୍ତୁ ତା'ର ରକ୍ତିମ ଚକ୍ଷୁର ଚଞ୍ଚଳ ଦୃଷ୍ଟି ଶତ୍ରୁ ପ୍ରତି ସତର୍କ ଦୃଷ୍ଟି ରଖିଥିଲା ।

ଜୁମିନା ଗଛ ଉପରେ ବସି ଦୁଇ ଜନ୍ତୁଙ୍କର ଦ୍ୱନ୍ଦ୍ୱ ଯୁଦ୍ଧ ପରିଣାମ ପରିଷ୍କାର ଭାବରେ ଦେଖିପାରୁଥିଲା । ଜାୟାଣ୍ଟୋର ନିଶ୍ଚିତ ପରାଜୟ ଓ ନିଜର ଅସହାୟତାର କଥା ଚିନ୍ତା କରି ସେ ବିକଳରେ ଚିତ୍କାର କରିଉଠିଲା । 'ନା...ନା...ନା.. ।'

ଜାୟାଣ୍ଟୋର ପରାଜୟ ଜୁମିନା କୌଣସି ପ୍ରକାରେ ସହ୍ୟ କରିପାରୁ ନଥାଏ । ତା'ର ହାତରେ କୌଣସି ଅସ୍ତ୍ର ଥିଲେ ସେ ନିଶ୍ଚୟ ସଙ୍ଗେ ସଙ୍ଗେ ଡାଇନୋସରର ବେକ ଉପରେ ଚୋଟଟିଏ ପକାଇଥାନ୍ତା ।

ଜାୟାଣ୍ଟୋର ମୃତ୍ୟୁ ଘଟିଲେ ତା'ର ମୃତ୍ୟୁ । ଏହି ଡାଇନୋସରର ତୀକ୍ଷ୍ଣ ଦନ୍ତ ଦ୍ୱାରା ଯେ ମୃତ୍ୟୁ ଅବଶ୍ୟମ୍ଭାବୀ, ଏଥିରେ ତିଳେ ହେଲେ ସନ୍ଦେହ ନାହିଁ । ଭୟ ଓ ଉତ୍ତେଜନା ଜୁମିନାର ଦୁର୍ବଳ ଶରୀର ସହ୍ୟ କରିପାରିଲା ନାହିଁ । ସେ ଜ୍ଞାନ ହରାଇ ବସିଲା ।

ଟିରାନୋସରାସ୍‌ଟି ଜାୟାଣ୍ଟୋର ଚାରିପାଖରେ କିଛି ସମୟ ଘୂରିଲା ପରେ ଟିକେ ବିଶ୍ରାମ ନେବାକୁ ଚେଷ୍ଟାକଲା । ଏହି ଅବସରରେ ଜାୟାଣ୍ଟୋ ବିଦ୍ୟୁତ୍ ଗତିରେ ଉଠିପଡ଼ି ତା'ର ସମସ୍ତ ଶକ୍ତି ପ୍ରୟୋଗ କରି ଡାଇନୋସର ଉପରେ ଝାମ୍ପମାନ କଲା ଏବଂ ସଙ୍ଗେ ସଙ୍ଗେ ତା'ର ଆଗଗୋଡ଼ ଦୁଇଟିକୁ ପ୍ରବଳ ଜୋର୍‌ରେ ମୋଡ଼ିଦେଲା । ଫଳରେ ତା'ର ଗୋଡ଼ଟି ଭାଙ୍ଗି ଝୁଲିବାକୁ ଲାଗିଲା । ଏତିକିରେ ତା'ର ରାଗ ମେଣ୍ଟିଲା ନାହିଁ । ସେ ତା'ପରେ ତା' ବେକକୁ ମଧ୍ୟ କୁଣ୍ଢାଇ ଧରି ମୋଡ଼ିବାକୁ ଲାଗିଲା । ତାହାମଧ୍ୟ ଭାଙ୍ଗିଗଲା । ଜନ୍ତୁଟି ଆଉ ଗଳା ଉପରକୁ ଉଠାଇ ପାରିଲା ନାହିଁ ।



ଜାୟାଣ୍ଟୋ ବିଜୟ ଉଲ୍ଲାସରେ ଗର୍ବର ସହିତ ଚାରିଦିଗ କମ୍ପାଇବାକୁ ଲାଗିଲା । ଅନ୍ୟ ପକ୍ଷରେ ଟିରାନୋସରାସ୍ ପ୍ରତିଆକ୍ରମଣ କରିବାର ସମସ୍ତ ଶକ୍ତି ହରାଇ ସାରିଥିଲା । ତା'ପରେ ସେ ତାକୁ ଗୋଟିଏ ପାଖକୁ ଠେଲିଦେଲା । ଡାଇନୋସରଟିର ପାହାଡ଼ ଭଳି ଅତିକାୟ ଶରୀରଟି ଖୁବ୍ ଜୋର୍‌ରେ ଶବ୍ଦକରି ମାଟି ଉପରେ ପଡ଼ିଗଲା ଏବଂ କମ୍ପିବାକୁ ଲାଗିଲା ।

ତାହାରି ଆଡ଼କୁ କିଛିକ୍ଷଣ ତୀବ୍ର ଦୃଷ୍ଟିରେ ଅନାଇ ରହିଲା ଜାୟାଣ୍ଟୋ । ତା'ର ବିଶାଳ ଛାତିଟି ଧଡ଼ପଡ଼ ହୋଇ ନାଚୁଥାଏ । ସେହି ଅବସ୍ଥାରେ ବିଜୟ ଉଲ୍ଲାସରେ ଛାତିରେ ହାତମାରି ନାଚି ନାଚି ବିଜୟ ଘୋଷଣା କରିବାକୁ ଲାଗିଲା ।

ଏହାପରେ ସେ ମହାଆନନ୍ଦରେ ଜୁମିନା ପାଖକୁ ଗଲା । ସେହି ଗଛ ଉପରେ ତାକୁ ଅଚେତ ଅବସ୍ଥାରେ ଦେଖି ନିଜ ହାତରେ ଧୀରେ ଧୀରେ ଉଠାଇ ଆଣି ଧରି ରଖିଲା ଏବଂ ତା'ର ମୁଣ୍ଡକୁ ଆଉଁସିବାକୁ ଲାଗିଲା ।

ଜାୟାଣ୍ଟୋର ନିଃଶ୍ୱାସ ପବନରେ ଜୁମିନାର ଜ୍ଞାନ ଫେରିଆସିଲା । ସେ ଏପଟସେପଟ ହୋଇ ଦେଖିଲା- ଗଛର କୋରଡ଼ ପରିବର୍ତ୍ତେ ସେ ଦାନବର ହାତରେ ବସିଛି । ନିଜ ଅଜାଣତରେ ଜୁମିନାର



ତୃଣଭୋଜୀ ଦୁଇ ଡାଇନୋସର - ଜଳରେ ରହିଛି ଡିପ୍ଲୋଡ଼ୋକାସ ଓ ଉପରେ ରହିଛି ବ୍ରଡେଟାସରାସ ।

ମୁଖମଣ୍ଡଳରେ ଆନନ୍ଦର ଝଲକ ଫୁଟି ଉଠିଲା । ତା'ର ପରିଚିତ ବନବାସୀ ଦାନବ- ତା'ର ବାହକ ଓ ରକ୍ଷକ- ବଳବାନ ଶତ୍ରୁକୁ ପରାସ୍ତ କରି ତା'ପାଖକୁ ଫେରିଆସିଛି... । ଏଥିପାଇଁ ସେ ଉଲ୍ଲସିତ ହେଲା । ସେ ସ୍ଥିର ଦୃଷ୍ଟିରେ ଚାହିଁ ରହିଲା ଜାୟାଣ୍ଟୋର ବନ୍ୟକଳାକାର ମୁଖମଣ୍ଡଳକୁ । ମାତ୍ର ତିନିଫୁଟର ବ୍ୟବଧାନରେ ଥାଏ ପରସ୍ପରର ଦୁଇଟି ମୁଖମଣ୍ଡଳ । ଭୟରେ ବା ଆତଙ୍କରେ ଏଥର ଆଉ ସେ ନିଜର ଆଖିରେ ହାତ ଦେଇ ନିଜକୁ ଆଉ ଲୁଚାଇଲା ନାହିଁ ।

ଜାୟାଣ୍ଟୋ ଆନନ୍ଦରେ କ'ଣ ଗୁଣୁ ଗୁଣୁ କରି ଗାଇବାକୁ ଲାଗିଲା ଏବଂ ଜୁମିନାକୁ ହାତରେ ଧରି ନଚେଇ ନଚେଇ ଆଗକୁ ମାଡ଼ିଚାଲିଲା । ଯେଉଁ ରାସ୍ତାରେ କିଛିକ୍ଷଣ ପୂର୍ବରୁ ଚାଲୁଥିଲା ସେହି ରାସ୍ତାରେ ଆସି ଠିଆ ହେଲା ।

ପ୍ରଫେସର ଓ ରବିନ୍‌ସନ୍ ଯେଉଁ ପାହାଡ଼ର ଖୋଲ କାନ୍ଥରେ ଆଶ୍ରୟ ନେଇଥିଲେ, ସେହିଠାରେ ରହି କିଛିଟା ଏହିଭଳି ଆଶ୍ଚର୍ଯ୍ୟକର ଘଟଣା ଦେଖିପାରିଥିଲେ । ଦୁଇଜଣ ସ୍ଥିର ଓ ନିଷ୍ପନ୍ଦରେ ସିନେମାର ଛବି ଦେଖିଲା ଭଳି ଚାହିଁ ରହିଥାନ୍ତି ।

## ଜୁମିନା ଜାୟାଣ୍ଟୋ କବଳରୁ ମୁକୁଳିଲେ :

ଜାୟାଣ୍ଟୋ ପାହାଡ଼ ଦିଗକୁ ଚାଲିବାକୁ ଆରମ୍ଭ କଲା ଏବଂ ରବିନ୍‌ସନ୍ ସ୍ଥିରତା ଭଙ୍ଗ କରି କହିଲେ - ''ପ୍ରଫେସର ତୁମର ଅନୁମାନ ସତ୍ୟରେ ପରିଣତ ହେଲା । ମନେ ହେଉଛି ଜାୟାଣ୍ଟୋ



ଜୁରାସିକ ଯୁଗରେ ସମୁଦ୍ର ବକ୍ଷର ଦୃଶ୍ୟ । ଜଳ ଭିତରେ ରହିଛି ଲମ୍ବା ଗଳାବାଲା ପ୍ଲେସିଓସରାସ ଏବଂ ହଂସ ଆକୃତିର ଇକଥିଓସରାସ । ଆକାଶ ମାର୍ଗରେ ଶିକାର ଧରିଛି - ଲେଜଓ୍ୱାଲା ରାକ୍ଷସ ଜାତିର ଦୁଇ ପକ୍ଷୀ ଟ୍ୟାରୋଡାକଟିଲ ଏବଂ ଲାଞ୍ଜ ନଥିବା ଟିରାନୋଡ଼ନ ।

ଜୁମିନାର କୌଣସି କ୍ଷତି କରିବ ନାହିଁ । କିନ୍ତୁ ଯେପରି ଭାବରେ ସେ ତାକୁ ରଖିଛି, ଆମ୍ଭମାନଙ୍କ ସହିତ ତା'ର ସାକ୍ଷାତ ହେବ କିପରି ? ଏହିପରି ଭାବରେ ତାକୁ ସେ ନେଇଯିବ କୁଆଡ଼େ ?''

ପ୍ରଫେସର କହିଲେ - ''ଧୈର୍ଯ୍ୟହରା ହୁଅନାହିଁ । ଏ ସମୟରେ ଅଧିର ହେବା ଠିକ୍ ନୁହେଁ । ଜାୟାଣ୍ଟୋ ନିଶ୍ଚିତ ଭାବରେ ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ଜୁମିନାକୁ ନେଇଯାଉଛି । ମନେହୁଏ ଆଗରେ ଥିବା ପାହାଡ଼ର କୌଣସି ଗହ୍ୱର ତା'ର ଲକ୍ଷ୍ୟସ୍ଥଳ । ସେଇଟା ହୁଏତ ତା'ର ବାସସ୍ଥଳୀ । ସେଠାରେ ନ ପହଞ୍ଚିଲା ପର୍ଯ୍ୟନ୍ତ ଏ ଜାନୁଆରର ଉଦ୍ଦେଶ୍ୟ ବୁଝିବା ସମ୍ଭବ ନୁହେଁ । ଜାୟାଣ୍ଟୋ ଆଗେଇ ଚାଲିଛି । ଆମେ ଚୁପ୍‌ଚାପ୍ ତାକୁ ଅନୁସରଣ କରିବା । ତେବେ ଏଠାରୁ ଉପରକୁ ଉଠିଯିବା ଆମ ପାଇଁ ଠିକ୍ ହେବ ।''

କିଛି ସମୟ ପରେ ଦିହେଁ ଲତାଟିଏ ଧରି ଉପରକୁ ଉଠିଗଲେ । ପ୍ରଫେସର ନିଜ ଅଣ୍ଟାରେ ଥିବା ଘଣ୍ଟାକୁ ଦେଖି କହିଲେ - ରବିନ୍, ସମୟ ବହୁତ ହୋଇଗଲାଣି । ଅନ୍ଧାର ହେବା ପୂର୍ବରୁ ଜୁମିନାକୁ ଉଦ୍ଧାର କରିବାକୁ ହେବ । ଏବେ ସନ୍ଧ୍ୟା ହେବାକୁ ଆଉ ମାତ୍ର ଦୁଇ ଘଣ୍ଟା ବାକି ଅଛି । କେବଳ ମାତ୍ର ଗୋଟାଏ ଛୁରୀକୁ ସମ୍ବଳ କରି ଜାୟାଣ୍ଟୋ ସହିତ ଲଢ଼ାଇ କରିବା ବୁଦ୍ଧିମାନର କାର୍ଯ୍ୟ



କେତେକ ଡାଇନୋସରମାନଙ୍କର ଠିକ୍ ପାଲ ବା ଡେଣା କୁହାଯାଇ ନ ପାରିଲେ ମଧ୍ୟ ଲାଞ୍ଜ ଏବଂ ଦୁଇ ବାହୁରେ ଏକପ୍ରକାରର ପାଲ ଥିଲା। ସମ୍ଭବତଃ ଆର୍ଚିମିସାସ ଥିଲା ଏହି ଜାତିର ଡାଇନୋସର। ପାଲ ଥିବା ସତ୍ତ୍ୱେ ବାହୁରେ ଆକୃତି ଛୋଟ ଥିଲା ବୋଲି ସେମାନେ ଉଡ଼ିପାରୁ ନଥିଲେ।

ହେବନାହିଁ। କିନ୍ତୁ ଆମ୍ଭେ ଅନ୍ୟ ଅସ୍ତ୍ର ପାଇବା କେଉଁଠୁ ? ଅନ୍ୟପକ୍ଷରେ ଜୁମିନାକୁ ଏମିତି ଛାଡ଼ି ଚାଲିଯିବା ବୋକାମୀର ପରିଚୟ ହେବ।''

ପ୍ରଫେସର ରବିନ୍‌ସନ୍‌କୁ କହିଲେ - ''ଏପରିସ୍ଥଳେ ଆମ ଭିତରୁ ଜଣେ ଜୁମିନାକୁ ଅନ୍ୱେଷଣ କରୁ ଏବଂ ଆଉ ଜଣକ ଫାଟକ ପାଖକୁ ଯାଇ ଲୋକଦଳ ଓ ଅସ୍ତ୍ରଶସ୍ତ୍ର ନେଇ ଆସିବାକୁ ହେବ। ଆପଣ ଜୁମିନାକୁ ପିଛା କରନ୍ତୁ। ମୁଁ ଯାଉଛି ଫାଟକ ପାଖକୁ। ଆପଣ ଧୈର୍ଯ୍ୟ ଧରି ସତର୍କତାର ସହିତ ଆଗକୁ ଚାଲନ୍ତୁ। ଜଙ୍ଗଲରେ ସାଂକେତିକ ଶବ୍ଦ ଦ୍ୱାରା ଆମେ ପରସ୍ପରକୁ ନିଜର ଉପସ୍ଥିତି ବିଷୟରେ ଜଣାଇବା କଷ୍ଟକର ହେବନାହିଁ। ଲାଗ ଲାଗ ତିନିଥର 'କୁ' ଶବ୍ଦ କାନରେ ବାଜିଲେ, ଆପଣ ମୋତେ ଠିକ୍ ଏହିଭଳି ଶବ୍ଦ କରି ଜବାବ ଦେବେ।''

ଏହାପରେ ମୁହଁରେ ହାତଦେଇ ତୀକ୍ଷ୍ଣ ସ୍ୱରରେ ସେ କହିଲେ- କୁ...କୁ...କୁ...। ତାଙ୍କ ବିଚିତ୍ର ଶବ୍ଦ ଶୁଣି ରବିନ୍‌ସନ୍ ଏ ଅସମୟରେ ମଧ୍ୟ ହସି ପକାଇଲେ। ସେ ସହାସ୍ୟ ବଦନରେ କହିଲେ - ''ହଁ, ମୋର ମନେରହିଲା। ଆପଣ ଏବେ ଯାଆନ୍ତୁ।''

ତା'ପରେ ପ୍ରଫେସର 'କୁ... କୁ...କୁ...' ଧ୍ୱନି କରି କରି ଗଛର ପତ୍ରରେ ପ୍ରତିଧ୍ୱନି ମିଶାଇ ଦୂରକୁ ଚାଲିଲେ। ପରକ୍ଷଣରେ ଏହା ସହିତ ଧ୍ୱନି ମିଶାଇଲେ ରବିନ୍‌ସନ୍ ଏବଂ ଜାୟାଣ୍ଟୋର

ଅନୁସରଣ କରିବାକୁ ଆଗେଇ ଚାଲିଲେ । ତେବେ ଜାୟାଣ୍ଟୋ କାହିଁ ? ସେ ହଡ଼ବଡ଼େଇ ଗଲେ । ଏହି ଅଳ୍ପ ସମୟ ମଧ୍ୟରେ ସେ ଦୃଷ୍ଟିର ବାହାରକୁ ଚାଲିଯାଇଛି । ରବିନ୍‌ସନ୍ କ'ଣ କରିବେ, କିଛି ଠିକ୍ କରିପାରିଲେ ନାହିଁ । ତେବେ ତା'ପାଦଚିହ୍ନକୁ ଲକ୍ଷ୍ୟକରି ଦ୍ରୁତଗତିରେ ଚାଲିବାକୁ ଲାଗିଲେ । ସେତେବେଳକୁ ଜାୟାଣ୍ଟୋ ରାସ୍ତା ଅତିକ୍ରମ କରି ଦୂରରେ ଥିବା ପାହାଡ଼ର ଉହାଡ଼କୁ ଚାଲି ଯାଇଥାଏ । ତା' ପାଖରେ ପହଞ୍ଚିବା ମାତ୍ରେ ରବିନ୍‌ସନ୍ ପରିଷ୍କାର ଭାବରେ ତମସା ପାହାଡ଼ର ଏକ ଆକାଶଚୁମ୍ବୀ ଚୂଡ଼ାର ଅଦ୍ଭୁତ ଦୃଶ୍ୟମାନ ଦେଖିବାକୁ ପାଇଲେ । ଅପଲକ ନୟନରେ ସେହି ଆଡ଼କୁ ଚାହିଁ ସେ ସ୍ତବ୍ଧ ହୋଇ ଠିଆ ହୋଇଗଲେ ।

ପାହାଡ଼ର ତଳଦେଶର ଅରଣ୍ୟ ସେତେ ଘଞ୍ଚ ନଥିଲା । ଅଳ୍ପ ଅଳ୍ପ ଦୂର ଛାଡ଼ି ଠିଆ ହୋଇଥାନ୍ତି ବଡ଼ ବଡ଼ ପଥର ଖଣ୍ଡ । ରବିନ୍‌ସନ୍ ସେଥିରେ ପାଦଦେଇ ଆସ୍ତେ ଆସ୍ତେ କିଛି ଦୂର ପର୍ଯ୍ୟନ୍ତ ପାହାଡ଼ ଉପରକୁ ଉଠିଗଲେ । ତା'ପରେ ଗୋଟିଏ ସ୍ଥାନରେ ଛିଡ଼ାହୋଇ ସେ ଦେଖିପାରିଲେ ଯେ, ଜାୟାଣ୍ଟୋ ଜୁମିନାକୁ ଧରି କିଛି ଦୂରରେ ଆସ୍ତେ ଆସ୍ତେ ଆଗକୁ ଚାଲିଛି । ପାହାଡ଼ର ଶୀର୍ଷଦେଶରେ ଏକ ଫାଙ୍କା ଜାଗା ରହିଛି । ତା'ର ତିନିପାଖ ବେଷ୍ଟନ କରିଛି ଉଚ୍ଚ ଉଚ୍ଚ ପଥରଖଣ୍ଡ । ଏହି ଆବଦ୍ଧ ଅଂଶରୁ ଏକ ପାଖଦେଇ ନିମ୍ନକୁ ଜଳାଧାରଟିଏ ବହିଯାଉଛି । ସେହି ଜଳାଧାର ପାଖରେ ଗୋଟିଏ ବିଶାଳ ପାହାଡ଼ ଖୁମ୍ବ ଆକାଶକୁ ମୁଣ୍ଡଟେକି ଛିଡ଼ା ହୋଇଛି । ଏହାରି ମଧ୍ୟରେ ଗୋଟିଏ ବିରାଟ ଗହ୍ୱର । ଜାୟାଣ୍ଟୋ ହଲି ହଲି ଜୁମିନାକୁ ଧରି ଦୁଇ ପଥରଖଣ୍ଡ ମଝି ରାସ୍ତାଦେଇ ସେହି ଗହ୍ୱର ଭିତରକୁ ପ୍ରବେଶ କଲା ।



ଜୁରାସିକ୍ ଯୁଗର ପ୍ରାରମ୍ଭିକ ଅବସ୍ଥାରେ ଦେଖାଯାଉଥିବା ନିରାମିଷାଶୀ ଡାଇନୋସରମାନଙ୍କ ମଧ୍ୟରେ ଅନ୍ୟତମ ହେଉଛି ପ୍ଲାଟିଓସରାସ୍ । ଶାକାହାରୀମାନଙ୍କ ମଧ୍ୟରେ ଏମାନେ ହିଁ ପ୍ରଥମେ ଜଳ ଛାଡ଼ି ସ୍ଥଳଭାଗରେ ଚଲାବୁଲା କରିବା ଆରମ୍ଭ କରିଥିଲେ । ଜିରାଫ ଭଳି ଉଚ୍ଚ ଗଳା ବଢ଼ାଇ ଏମାନେ ସ୍ୱଚ୍ଛନ୍ଦରେ ସୁଉଚ୍ଚ ଗଛର ଡାଳପତ୍ର ଖାଇପାରୁଥିଲେ ।

ରବିନସନ୍ ଜାଣିପାରିଲେ ଯେ, ସେହିଟା ହେଉଛି ଜାୟାଣ୍ଟୋର ବାସସ୍ଥାନ । ନାନା ଚିନ୍ତା ଓ ଆଶଙ୍କା ତାଙ୍କ ମନକୁ ଗ୍ରାସ କରିବାକୁ ଲାଗିଲା । ତେବେ ଶେଷରେ ସେ ସିଦ୍ଧାନ୍ତରେ ପହଞ୍ଚିଲେ

ଯେ, ବୋଧହୁଏ ଜାୟାଣ୍ଟୋ ଜୁମିନାକୁ ଏକ ନିରାପଦ ସ୍ଥାନରେ ରଖିବାକୁ ଏଠାକୁ ଆଣିଛି । ତା' ହୋଇ ନଥିଲେ ବନ୍ୟଜନ୍ତୁମାନଙ୍କ ନିକଟରୁ ରକ୍ଷାକରି ସେ ତାକୁ ବୋହି ଆଣନ୍ତା କାହିଁକି ?

ସେହି ପଥର ଗହ୍ୱର ଭିତରେ କୌଣସି ଆଲୋକ ରଶ୍ମି ପଡ଼ିବାର ଦେଖାଯାଉ ନ ଥିଲା, କିନ୍ତୁ ଗହ୍ୱରର ଗୋଟିଏ ପାଖ ଦେଇ କ୍ଷୀଣ ଆଲୋକ ପଡ଼ି ଭିତର ଅଂଶଟି ଆଲୋକିତ ହେଉଥିଲା ।

ରବିନ୍‌ସନ୍ ଲୁଚି ଲୁଚି ଗହ୍ୱର ନିକଟକୁ ଗଲେ ଏବଂ ଫାଟକ ପାଖରେ ଉଙ୍କିମାରି ଜାୟାଣ୍ଟୋକୁ ଛିଡ଼ା ହେବାର ଦେଖିବାକୁ ପାଇଲେ । ହେଲେ ଜୁମିନା ତା' ପାଖରେ ନଥିଲା । ସେ ପଥର ଉଢ଼ାଳରେ ଛପିରହି ତା'ର ଗତିବିଧି ପ୍ରତି ତୀକ୍ଷଣ ଦୃଷ୍ଟିରେ ଲକ୍ଷ୍ୟ କରୁଥାନ୍ତି । ଜାୟାଣ୍ଟୋ ତା'ର ଦୁଇହାତକୁ ମୁହଁ ପାଖକୁ ନେଇ କ୍ଷତ ସ୍ଥାନଗୁଡ଼ିକୁ ଅନ୍ୱେଷଣ କରି କ'ଣ ପରୀକ୍ଷା କରୁଥିଲା । ରବିନ୍‌ସନ୍ ଭାବିଲେ ବୋଧହୁଏ ଜୁମିନାକୁ ଏହାରି ଭିତରେ କେଉଁଠି ହେଲେ ଲୁଚାଇ ରଖିଛି ।

ଜାୟାଣ୍ଟୋ ଧୀରେ ଧୀରେ ଏପଟ ସେପଟ ହୋଇ ସେହିଠାରେ ବୁଲୁଥିଲା । ତା'ର ଏହି ଅପ୍ରସ୍ତୁତି ଅବସରରେ ବିରାଟ ଅଜଗରଟିଏ ପଥର ଖୋଲରୁ ବାହାରି ଅତର୍କିତ ଭାବରେ ତା'ର ଶରୀରରେ ଗୁଡ଼େଇ ହୋଇଗଲା । ଜାୟାଣ୍ଟୋ କାଳବିଳମ୍ବ ନ କରି ଗୋଟିଏ ହାତରେ ଆସ୍ତେ ଆସ୍ତେ



କରି ସାପର ଲାଞ୍ଜକୁ ଏବଂ ଅନ୍ୟ ହାତରେ ତା' ମୁଣ୍ଡକୁ ଧରି ଟାଣିବାକୁ ଆରମ୍ଭ କଲା । କିନ୍ତୁ ତା'ଠାରୁ ନିଜକୁ ମୁକୁଳିବାର କୌଣସି ଉପାୟ ପାଇଲା ନାହିଁ । କ୍ରମଶଃ ଦାନବର ଗଳାରେ ଚାପ ବଢ଼ିବାକୁ ଲାଗିଲା । ଫଳରେ ସେ କଷ୍ଟ ଅନୁଭବ କଲା ଓ ଗର୍ଜନ ସହିତ ଚିତ୍କାର କଲା । ନିରୁପାୟ ହୋଇ ଚକ୍ଷୁ ବିସ୍ତାରିତ କରି ଘୂରିବାକୁ ଲାଗିଲା ।

ଏହିଭଳି ଜୀବନ ବିକଳରେ ଘୂରୁ ଘୂରୁ ଜାୟାଣ୍ଟୋ ଏକ ଉପାୟ ଚିନ୍ତା କଲା । ସେ ପଥରର କାନ୍ଥ ଉପରକୁ ଆଉଜି ପଡ଼ିଲା ଏବଂ ତା'ର ସମସ୍ତ ଶକ୍ତି ପ୍ରୟୋଗ କରି କାନ୍ଥରେ ନିଜର ପିଠିକୁ ଘଷିବାକୁ ଲାଗିଲା । ଜାୟାଣ୍ଟୋ ଶରୀରର ପ୍ରଚଣ୍ଡ ଚାପ ଫଳରେ ଅଜଗର ଦେହର ହାଡ଼ଗୁଡ଼ିକ ମଡ଼ ମଡ଼୍ କରି ଭାଙ୍ଗିବାକୁ ଲାଗିଲା । କ୍ଷତବିକ୍ଷତ ହେବା ଫଳରେ ସାପର ଶକ୍ତି ହ୍ରାସ ହେବାକୁ ଲାଗିଲା । ଏହି ସୁଯୋଗରେ ସେ ଦୁଇ ହାତରେ ସାପଟିକୁ ଆସ୍ତେ ଆସ୍ତେ ଶରୀର ଉପରୁ କାଢ଼ିବାକୁ ଲାଗିଲା । ତା'ପରେ ସମସ୍ତ ଶକ୍ତି ପ୍ରୟୋଗ କରି ସାପଟିକୁ ଲୁଗା କଚାଡ଼ିଲା ଭଳି କଚାଡ଼ି କଚାଡ଼ି ମାରିଦେଲା ।

ରବିନ୍‌ସନ୍ ପଥର ଉଢ଼ାଳରେ ଠିଆ ହୋଇ ଅଜଗର ଓ ଜାୟାଣ୍ଟୋର ଅଦ୍ଭୁତ ଲଢ଼େଇ ଦେଖୁଥିଲେ । ଏ ସୁଯୋଗକୁ ସେ ହାତଛଡ଼ା କରିବାକୁ ଚାହିଁଲେ ନାହିଁ । ମୁହୂର୍ତ୍ତେ ସମୟ ନଷ୍ଟ ନ କରି ନିଃଶବ୍ଦରେ କାନ୍ଥ ପାଖଦେଇ ଭିତରକୁ ପ୍ରବେଶ କଲେ ଏବଂ ଜୁମିନାକୁ ଖୋଜିବାକୁ ଲାଗିଲେ ।

ପଥର ଗହ୍ୱରର ଏକ କୋଣରେ ଜୁମିନାକୁ ବସାଇ ଦେଇ ଜାୟାଣ୍ଟୋ ଅଜଗର ଆକ୍ରମଣରେ ପଡ଼ିଯାଇଥିଲା । ସେହି ସୁଯୋଗରେ ଜୁମିନା ଉଠିପଡ଼ି ପଲକ ମାତ୍ରକେ ଗୋଟିଏ ସରୁ ଗାତ ଭିତରେ ଆତ୍ମଗୋପନ କଲା । ଗାତ ମୁହଁଟି ସରୁ ହେଲେ ମଧ୍ୟ ତା' ଭିତରେ ଠିଆ ହେବା ପାଇଁ ପ୍ରଶସ୍ତ ସ୍ଥାନ ଥିଲା । କିନ୍ତୁ ସେଠାରେ ଥାଇ ମଧ୍ୟ ଜୁମିନା ହତାଶ ଓ ଆଶଙ୍କାରେ କମ୍ପିବାକୁ ଲାଗିଲା । ଯେତେବେଳେ ଅଜଗର ସାପର କବଳରେ ପଡ଼ି ଜାୟାଣ୍ଟୋ ଶେଷ ମୁହୂର୍ତ୍ତରେ ଜୋର୍‌ରେ ଚିତ୍‌କାର କରିବାକୁ ଲାଗିଲା, ସେତେବେଳେ ସେ ଗର୍ତ୍ତ ଭିତରେ ଆଉ ରହିପାରିଲା ନାହିଁ । ଆସ୍ତେ ଆସ୍ତେ ମୁଣ୍ଡ ବାହାର କରି ସେମାନଙ୍କର ଲଢ଼ାଇ ଦେଖିବାପାଇଁ ବାହାରକୁ ଉଙ୍କି ମାରିଲା । ଠିକ୍ ଯୋଗକୁ ରବିନ୍‌ସନ୍ ଏହି ସମୟରେ ସେଠାରେ ପହଞ୍ଚିଥାନ୍ତି । ଆକସ୍ମିକ ଭାବରେ ଉଭୟଙ୍କର ସାକ୍ଷାତ ହୋଇଗଲା । ରବିନ୍‌ସନ୍ ଉଲ୍ଲସିତ ହୋଇ ଚାପା କଣ୍ଠରେ କହିଲେ- ''ଜୁମିନା, ଭୟ କର ନାହିଁ, ମୁଁ ଆସି ଯାଇଛି ।''

''ରବିନ୍, ମୋତେ ବଞ୍ଚାଅ...'' ବୋଲି କହୁ କହୁ ଗାତ ଭିତରୁ ଜୁମିନା ଉପରକୁ ହାତ ବଢ଼ାଇ ଦେଲା ଏବଂ ରବିନ୍‌ସନ୍ ତାକୁ ବାହାରକୁ ଟେକିଆଣି କହିଲେ- ''ଶୀଘ୍ର ପଳାଇ ଚାଲ । ବର୍ତ୍ତମାନ ଜାୟାଣ୍ଟୋ ଅଜଗର ସହିତ ଯୁଦ୍ଧରେ ଲିପ୍ତ ।''

ଜୁମିନା ବହୁତ ଦୁର୍ବଳ ହୋଇଯାଇଥିଲା । ତାକୁ ନିଦ୍ରା ଲାଗୁଥିଲା । ସେ ବିଶ୍ରାମ ଚାହୁଁଥିଲା । ସାରା ଦିନର କ୍ଳାନ୍ତି, ଆତଙ୍କ, ଭୟ ସବୁ ମିଶିକରି ତାକୁ ଅଧିକ ଦୁର୍ବଳ କରି ଦେଉଥିଲା । କିନ୍ତୁ ଡେରି କରିବାର ଉପାୟ ନାହିଁ । ପଳାଇବାର ଏଭଳି ସୁଯୋଗ ଆଉ ମିଳିବ କି ନାହିଁ ସନ୍ଦେହ ।



ଟେରୋସରମାନେ ସାଧାରଣତଃ ପକ୍ଷୀ ଓ ବାଦୁଡ଼ି ଭଳି ଥିଲେ । ଏମାନେ ଦୁଇ ଭାଗରେ ବିଭକ୍ତ ହୋଇ ରହିଥିଲେ - ଗୋଟିଏ ଲାଞ୍ଜହୀନ, ଅନ୍ୟଟି ଚମଚଟା ଭଳି ସରୁ ଲାଞ୍ଜ ବିଶିଷ୍ଟ । ଲାଞ୍ଜଥିବା ପକ୍ଷୀଟିକୁ ଟ୍ୟାରୋଡ଼ାକଟିଲ ଏବଂ ଲାଞ୍ଜ ନଥିବା ପକ୍ଷୀଟିକୁ ଟୋରୋନୋଡ଼ନ କୁହାଯାଏ ।

ରବିନ୍‌ସନ୍ କୌଣସି କଥା ଚିନ୍ତା ନ କରି ଜୁମିନାର ହାତଧରି ଜାୟାଣ୍ଟୋର ଆସ୍ଥାନଠାରୁ ନିଃଶବ୍ଦରେ ବାହାରି ଆସିଲେ ।

## ରାକ୍ଷସ ପକ୍ଷୀ ଟିରୋ ଡ୍ୟାକ୍‌ଟିଲ୍ :

ଏଥର କିନ୍ତୁ ରବିନ୍‌ସନ୍ ଜାୟାଣ୍ଟୋର ପିଛା କରିଥିବା ରାସ୍ତାରେ ଆଗେଇଲେ ନାହିଁ । ଅନ୍ୟ ଏକ ଅଜଣା ରାସ୍ତାରେ ଆଗକୁ ଚାଲିବାକୁ ଲାଗିଲେ । ଅଜଗରକୁ ମାରିସାରି ଜାୟାଣ୍ଟୋ ଯେ' ଜୁମିନାର ସନ୍ଧାନରେ ବାହାରିବ ଏକଥା ତାଙ୍କୁ ଜଣା ଥିଲା । କିଛି ସମୟପରେ ସେମାନେ ଗୋଟିଏ ନଦୀ ନିକଟରେ ପହଞ୍ଚିଲେ ।

ଏତିକିବେଳେ ହଠାତ୍ ପଛରୁ ଜାୟାଣ୍ଟୋ ଆସୁଥିବାର ଦେଖି ଗଛଲତା ଦୁହିଁଙ୍କର ହଲକ ଶବ୍ଦ ଶୁଭିଲା । କୌଣସି ଆଡ଼କୁ ଦୃଷ୍ଟି ନଦେଇ ଗଛପତ୍ର  ଭାଂଗି ମେଘ ଗର୍ଜନ ଭଳି ଶବ୍ଦରେ ବନଭୂମି ପ୍ରକଂପିତ କରି ଝଡ଼ବେଗରେ ଜାୟାଣ୍ଟୋ ସେମାନଙ୍କ ଆଡ଼କୁ ଧାଇଁ ଆସୁଥିଲା । ସାମନାରେ ଗଭୀର

ନଦୀ, ପଛରେ ଜାୟାଣ୍ଟୋ ରାକ୍ଷସ... । ନଦୀର ଗର୍ଭଦେଶ ସେମାନେ ଠିଆ ହୋଇଥିବା ସ୍ଥାନରୁ ପ୍ରାୟ ଷାଠିଏ ସତୁରୀ ଫୁଟ ତଳେ । ଏଣୁ ସେମାନେ ସେହିଠାରେ ଅଟକିଗଲେ । କାରଣ ନଦୀ ନିକଟକୁ ଓହ୍ଲାଇବାପାଇଁ କୌଣସି ରାସ୍ତା ନାହିଁ । ତେବେ, ଜାୟାଣ୍ଟୋ କବଳରୁ ରକ୍ଷା ପାଇବାପାଇଁ ନଦୀଗର୍ଭକୁ ଡେଇଁବା ବ୍ୟତୀତ ଆଉ କୌଣସି ଉପାୟ ନଥିଲା । ରବିନ୍‌ସନ୍ ତଳକୁ ଓହ୍ଲାଇବାର ବାଟ ଖୋଜୁଥାନ୍ତି । ପଛରୁ ଗର୍ଜନ କରି ଜାୟାଣ୍ଟୋ ଧାଇଁ ଆସୁଥାଏ । ତା'ର ପାହାଡ଼ ଭଳି ଶରୀରର ଧକ୍‌କାରେ ଛୋଟ ଛୋଟ ପଥର ଓ ଗଛଡାଳପତ୍ର ଭାଂଗି ପଡୁଥାଏ । କିନ୍ତୁ ତା'ର ସେଥିପ୍ରତି ଭ୍ରୂକ୍ଷେପ ନାହିଁ । କେବଳ ଜୁମିନାକୁ ଉଦ୍ଧାର କରିବାପାଇଁ ସେ ଧାଉଁଥାଏ ।

ଆଗକୁ ଯିବାର ରାସ୍ତା ନାହିଁ ବୋଲି ଜାଣିପାରି ଜାୟାଣ୍ଟୋ ଆନନ୍ଦରେ ଛାତିରେ ହାତମାରି ନାଚିବାକୁ ଲାଗିଲା ଏବଂ ଆସ୍ତେ ଆସ୍ତେ ଏମାନଙ୍କର ନିକଟବର୍ତ୍ତୀ ହେବାକୁ ଲାଗିଲା । ଏହା ଦେଖି ଜୁମିନା ଚିତ୍କାର କରିଉଠିଲେ । ରବିନ୍‌ସନ୍‌ର କିନ୍ତୁ ଏହି ସମୟରେ ସାହସର ସହିତ ମୁକୁଳିବାର ବାଟ ଖୋଜିବାରେ ଲାଗିଥାନ୍ତି ।

ହଠାତ୍ ଏକ ଉପାୟ ତାଙ୍କ ନଜରକୁ ଆସିଲା । ସେ ଦେଖିଲେ, ପ୍ରାୟ କେତୋଟି ମୋଟା ଲତା ଗୋଟିଏ ବଡ଼ ପଥରର ପାଖଦେଇ ଜଳକୁ ନିମ୍ନଗାମୀ ହୋଇଛି । ରବିନ୍‌ସନ୍ ବୁଝିପାରିଲେ ଯେ ଏହା ନିଶ୍ଚୟ ନଦୀର ଗର୍ଭପର୍ଯ୍ୟନ୍ତ ଲମ୍ବିଯାଇଛି । ତେଣୁ କାଳବିଳମ୍ବ ନ କରି ଜୁମିନାକୁ ଚିତ୍‌କାର କରି କହିଲେ- ''ଶୀଘ୍ର ମୋ କାନ୍ଧରେ ବସିପଡ଼ !'' ତା'ପରେ ସେ ସେହି ଲତା ସାହାଯ୍ୟରେ ନଦୀ ଗର୍ଭକୁ ଓହ୍ଲାଇବା ଆରମ୍ଭ କରିନେଲେ । କିନ୍ତୁ ସେମାନଙ୍କ ପାଇଁ ଯେ ଏକ ନୂଆ ବିପଦ ସେଠାରେ ଅପେକ୍ଷା କରିଥିଲା, ତାହା ସେମାନେ ଲକ୍ଷ୍ୟ କରି ନଥିଲେ ।

ଗୋଟିଏ ଅତିକାୟ ରାକ୍ଷସ ପକ୍ଷୀ ଥରକୁ ଥର ଚକ୍‌କର ମାରି ସେମାନଙ୍କ ମୁଥାଉପରେ ଉଡୁଥାଏ । ଏହା ଦେଖିବାକୁ ଏକ ବିଶାଳ ବାଦୁଡ଼ି ଭଳି । ପ୍ରସାରିତ ଡେଣାଦୁଇଟି ଚମଡ଼ାରେ ଆବୃତ । ତା'ର ବିଶାଳକାୟ ଥଣ୍ଟ ଦୁଇଟିରେ ଧାଡ଼ି ଧାଡ଼ି ତୀକ୍ଷ୍ଣ ଦାନ୍ତ ବସାଯାଇଥିବା ଭଳି ଦେଖାଯାଉଥାଏ । ପଛକୁ ରହିଥାଏ ଏକ ଦୀର୍ଘକାୟ ପୁଚ୍ଛ । ସେହି ଆଦିମ ପକ୍ଷୀଟି ବିଦ୍ୟୁତ୍‌ବେଗରେ ଆସି ରବିନ୍‌ସନ୍‌ଙ୍କ କାନ୍ଧରୁ ତା' ଦୁଇପାଦରେ ଥିବା ଦୀର୍ଘ ନଖଦ୍ୱାରା ଜୁମିନାକୁ ଟେକିନେଲା ।

ତାହା ହୋଇଥିଲେ ସେହି ରାକ୍ଷସ ବାଦୁଡ଼ି ବା ଟିରୋଡ଼୍ୟାକ୍‌ଟିଲ ହାତରେ ତା'ର ନିଶ୍ଚୟ ମୃତ୍ୟୁ ହୋଇଥା'ନ୍ତା, କାରଣ ତାହା ଆକାଶମାର୍ଗରେ ତାକୁ ଗୋଟାପଣେ ଗିଳିନେଇ ଥାଆନ୍ତା । କିନ୍ତୁ ଭଗବାନଙ୍କର ଅସୀମ କରୁଣା ଭଳି ଜାୟାଣ୍ଟୋ ଅକସ୍ମାତ୍ ଧାଇଁଆସିଲା ଏବଂ ସେହି ମୁହୂର୍ତ୍ତରେ ତା'ର ବଳିଷ୍ଠ ହସ୍ତରେ ରାକ୍ଷସ ପକ୍ଷୀର ଗଳାକୁ ଧରିନେଲା । ଟିରୋଡ଼୍ୟାକ୍‌ଟିଲ ଆଉ ଉଡ଼ିପାରିଲାନାହିଁ । ତା'ର ସ୍ଖଳିତ ପାଦରୁ ଜୁମିନା ମୁକ୍ତି ପାଇଗଲା ଏବଂ ଭୂଇଁରେ ପଡ଼ିଗଲା । ଜାୟାଣ୍ଟୋ ତାକୁ ତଳୁ ଉଠାଇନେଲା । ଏଣେ କ୍ଷୁବ୍‌ଧ ଟିରୋଡ଼୍ୟାକ୍‌ଟିଲ ତା' ଦୁଇପାଦରେ ଜାୟାଣ୍ଟୋର ମୁଣ୍ଡରେ ଥିବା ଦୀର୍ଘବାଳକୁ ଆମ୍ପୁଡ଼ି ଧରିଲା ।



ଟେରୋସରମାନେ ଡାଇନୋସରମାନଙ୍କର ଦୂର ସଂପର୍କୀୟ ବଂଶଧର । ଏମାନଙ୍କର ଆବିର୍ଭାବ ଘଟିଥିଲା ଡାଇନୋସରମାନଙ୍କ ସମୟରେ । ଚିତ୍ରରେ ଲାଞ୍ଜହୀନ ଟେରୋନୋଡ଼ନକୁ ଦର୍ଶାଯାଇଛି । ଏହାର ଡେଣା ପତଳା ଚମଡ଼ା ଦ୍ୱାରା ନିର୍ମିତ । ହାତର ଅଙ୍ଗୁଳିର ଅଗ୍ରଭାଗରେ ତୀକ୍ଷ୍ଣ ନଖ ଥାଏ ।

ଜାୟାଣ୍ଟୋ ତୁଳନାରେ ଟିରୋଡ଼୍ୟାକ୍‌ଟିଲ କ୍ଷୁଦ୍ର ଥିଲା । କିନ୍ତୁ, ତା'ର ଶକ୍ତି ଅତି ତୁଚ୍ଛ ନଥିଲା । ସେ ତାକୁ ଦୁଇପାଦର ନଖ ଓ ଥଣ୍ଟ ଦ୍ୱାରା ଖୁମ୍ପିବାକୁ ଲାଗିଲା । ତୀବ୍ର ଯନ୍ତ୍ରଣାରେ ଜାୟାଣ୍ଟୋର ଶରୀର କମ୍ପିବାକୁ ଲାଗିଲା । ଏଣୁ ଶତ୍ରୁକୁ ବିନାଶ କରିବାପାଇଁ ସେ ଜୁମିନାକୁ ତଳେ ଓହ୍ଲାଇଦେଇ ଟିରୋଡ଼୍ୟାକ୍‌ଟିଲର ଗୋଟାଏ ଗୋଡ଼ ଟାଣି ଧରିଲା ।

ଜୁମିନା ବଂଚିବାର ଆଶା ଛାଡ଼ି ଦେଇଥିଲା । କିନ୍ତୁ, ମୁକ୍ତିପାଇଁ ତା'ମନରେ ସାହସ ଜାଗିଉଠିଲା । ଜାୟାଣ୍ଟୋର ବ୍ୟସ୍ତତାର ସୁଯୋଗ ନେଇ ଦ୍ରୁତଗତିରେ ଲତାଟି ପାଖକୁ ଚାଲିଆସିଲା । ତାହାପରେ ଆଖିପଲକ ମଧ୍ୟରେ ଲତାଟିକୁ ଧରି ନଦୀଭିତରକୁ ନିମ୍ନଗାମୀ ହେବାକୁ ଲାଗିଲା ।

ଜାୟାଣ୍ଟୋର ବଜ୍ରମୁଷ୍ଟିର ପ୍ରହାରରେ ଟିରୋଡ଼୍ୟାକ୍‌ଟିଲ ଗଳାର ହାଡ଼ ଭାଂଗି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ସଂଗେସଂଗେ ପକ୍ଷୀଟି ପ୍ରାଣ ହରାଇଲା । ଜାୟାଣ୍ଟୋ ସେହି ମୃତ ଶରୀରକୁ ବୁଲେଇ



ବୁଲେଇ ନଦୀଗର୍ଭକୁ ନିକ୍ଷେପ କଲା । ତା'ପରେ ସେ ଜୁମିନାକୁ ଖୋଜିବାକୁ ଲାଗିଲା । ତାକୁ ନ ପାଇ ପ୍ରଚଣ୍ଡ ଗର୍ଜନ କରିବାକୁ ଲାଗିଲା । ଟିରୋଡ୍ୟାକ୍‌ଟିଲର ନଖର ଆଘାତରେ ତା' ଶରୀରର ବହୁ ଅଂଶ ଖଣ୍ଡିଆଖାବରା ହୋଇ ମାଂସଗୁଡ଼ିକ ଝୁଲିପଡ଼ିଥାଏ ଏବଂ କ୍ଷତସ୍ଥାନରୁ ରକ୍ତ ଝରୁଥାଏ । ସେଥିପ୍ରତି ଭ୍ରୂକ୍ଷେପ ନ କରି ସେ ତା'ର ଦୁର୍ଲଭ ଦ୍ରବ୍ୟଟିକୁ ଖୋଜୁଥାଏ ।

ଏହି ସମୟରେ ହଠାତ୍ ଜୁମିନା ଲତା ସାହାଯ୍ୟରେ ତଳକୁ ଓହ୍ଲାଉଥିବା ଜାୟାଣ୍ଟୋ ଦେଖିପାରିଲା । ସଂଗେ ସଂଗେ ସେ ଧାଇଁ ଆସି ଲତାଟିକୁ ମାଟିରୁ ଉପାଡ଼ି ଦେଲା । ତାହାପରେ ସାବଧାନର ସହିତ ଲତାକୁ ଦୁଇହାତରେ ଆସ୍ତେ ଆସ୍ତେ ଉପରକୁ ଟାଣିବାକୁ ଲାଗିଲା । ଫଳରେ ଜୁମିନା ଓ ରବିନ୍‌ସନ୍ ନିମ୍ନଗାମୀ ହେବା ପରିବର୍ତ୍ତେ ଊର୍ଦ୍ଧ୍ୱଗାମୀ ହେବାକୁ ଲାଗିଲେ । ସେମାନେ ଭୟରେ ଆର୍ତ୍ତନାଦ କରିବାକୁ ଲାଗିଲେ । ଜାୟାଣ୍ଟୋ ହାତରେ ଟାଣୁଥିବା ଲତା ସଂଗରେ ସେମାନେ ଜାଲରେ ଛନ୍ଦି ହୋଇଯାଇଥିବା ମାଛଭଳି ଉପରକୁ ଉଠୁଥାନ୍ତି । ରବିନ୍‌ସନ୍ ହଠାତ୍ ଜୁମିନାକୁ କହିଲେ-

''ଶୀଘ୍ର ଲତାଟା ଛାଡ଼ିଦିଅ ?'' ଏହାପରେ ଦୁଇଜଣ ଜଣକ ପରେ ଜଣେ ଲତାଟିକୁ ଛାଡ଼ିଦେଇ ନଦୀଗର୍ଭରେ ଯାଇ ପଡ଼ିଗଲେ, କିନ୍ତୁ ଜାୟାଣ୍ଟୋ ଉଦ୍‌ବେଗର ସହିତ ସେହି ଲତାଟିକୁ ଟାଣିବାକୁ ଲାଗିଥାଏ । ଶେଷପର୍ଯ୍ୟନ୍ତ ଟାଣିଟାଣି ତାହା ଉପରକୁ ଉଠାଇଲା ।

-ହେଲେ ଜୁମିନା କାହିଁ ?

ଲତାଟିକୁ ତଳେ ପକାଇଦେଇ ପ୍ରଚଣ୍ଡ ଆକ୍ରୋଶରେ ଦାନ୍ତ କଡ଼ମଡ଼ କରି ଘନ ଘନ ଗର୍ଜନ ସହିତ ଜାୟାଣ୍ଟୋ ତା'ର ବଳିଷ୍ଠ ହାତ ଦୁଇଟି ନିଜଛାତିରେ ପିଟିବାକୁ ଲାଗିଲା । ତା'ପରେ ଏପଟ ସେପଟ ଇତସ୍ତତଃ ହୋଇ ଧାଇଁଲାପରେ, ହଠାତ୍ ମନରେ କ'ଣ ଚିନ୍ତାକରି ଗୋଟିଏ ଦିଗକୁ ତୀରବେଗରେ ଦଉଡ଼ି ଚାଲିଗଲା ।

**ମୁକ୍ତିର ଆଶା ଉଜ୍ଜ୍ୱଳ ହେଲା :**

ରବିନ୍‌ସନ୍ ଓ ଜୁମିନା ନଦୀର ସ୍ରୋତ କାଟି ପହଁରି ପହଁରି ବିପରୀତ କୂଳରେ ପହଞ୍ଚିଲେ । କ୍ଳାନ୍ତି ଓ ଅବସାଦରେ ସେମାନେ ପଥରକୁ ଆଉଜି କିଛିକ୍ଷଣ ପାଇଁ ଭାସିରହିଲେ । ଆପାତତଃ କୌଣସି ଉପାୟରେ ଜାୟାଣ୍ଟୋର ଦୃଷ୍ଟି ଆଢୁଆଳରେ ପହଞ୍ଚି ଯାଇଛନ୍ତି । ଭୟ ଓ ଆତଙ୍କହୀନ



ମନରେ କିଛିଟା ଶାନ୍ତି ଫେରିପାଇଛନ୍ତି । କିନ୍ତୁ ଏହି ଆଦିମ ଅରଣ୍ୟରେ ଶାନ୍ତି କେଉଁଠି ? ମୃତ୍ୟୁ ଆଉ ଭୟ ଏହାର କୋଣଅନୁକୋଣରେ ଯେ ଛପି ରହିଛି, ଏହି କଥା ଚିନ୍ତା କରି ଓ ମନରେ ସାହସ ବାନ୍ଧି ସେମାନେ ଉପରକୁ ଉଠିବସିଲେ । ଜାୟାଣ୍ଟୋ ଆଉ ସେମାନଙ୍କ ଦୃଷ୍ଟିଗୋଚର ହେଲା ନାହିଁ । କିନ୍ତୁ ବିକଟ ମୁଖକରି ଯେପରି ନିଃଶବ୍ଦରେ କ୍ରୁର ଭାବରେ ତମସା ପାହାଡ଼ର ଚୂଡ଼ାଟା ସାମନାରେ ସହାସ୍ୟରେ ଉପରକୁ ମୁଣ୍ଡଟେକି ଛିଡ଼ା ହୋଇଥାଏ ।

ରବିନ୍‌ସନ୍ ଓ ଜୁମିନା ଦୂରରୁ ସ୍ପଷ୍ଟଭାବରେ ଦେଖିପାରୁଥାନ୍ତି- ତାହା ଅବିକଳ ଗୋଟିଏ ମନୁଷ୍ୟ ମଥାଭଳି ଦେଖାଯାଉଥାଏ । ସେମାନେ ପଲକହୀନ ଦୃଷ୍ଟିରେ ସେହିଆଡ଼କୁ ଚାହିଁ ରହିଥାନ୍ତି । ତାହାପରେ ଧୀରେ ଧୀରେ ଜୁମିନା କହିଲେ- ''ଅବିକଳ ମନୁଷ୍ୟ ମଥାଭଳି ଦେଖାାଯାଉଥିବା ଏ ଚୂଡ଼ାଟି ସତେଯେପରି ହାତରେ ତିଆରି ହେଲାଭଳି ଦେଖାଯାଉଛି ।''

-''ହଁ ଜୁମିନା, ତାହା କୌଣସି ଶିଳ୍ପୀର ହାତରେ ତିଆରି ହୋଇଛି । କିନ୍ତୁ ମୁଁ ଭାବୁଛି- ଏଭଳି ଆଦିମ ଅରଣ୍ୟରେ ଅସାଧାରଣ କାମଟି କଲା କିଏ ? ଏଠାକାର ଅରଣ୍ୟରେ ବସବାସ କରୁଛନ୍ତି କୋଟି କୋଟି ବର୍ଷ ପୂର୍ବର ପ୍ରାକ୍-ଐତିହାସିକ ହିଂସ୍ରଜନ୍ତୁମାନେ । ବର୍ତ୍ତମାନ ପୃଥିବୀର ଜଳବାୟୁରେ ଯାହାର ଅସ୍ତିତ୍ୱ କଳ୍ପନାତୀତ, ଅଥଚ ସେହି ଜୁରାସିକ୍ ଯୁଗର ଜୀବଜନ୍ତୁମାନଙ୍କୁ ଆମେ ଆଜି ନିଜ ଆଖିରେ ଦେଖିବାକୁ ପାଉଛୁ । ସେମାନଙ୍କ ଭିତରେ ଅନ୍ୟତମ ହେଲା ଜାୟାଣ୍ଟୋ... ପରବର୍ତ୍ତୀ ପର୍ଯ୍ୟାୟରେ ଜନ୍ମ ନେଇଥିଲା ବର୍ତ୍ତମାନର ମନୁଷ୍ୟର ଆଦିମ ପୁରୁଷ । ଜୁରାସିକ୍ ଯୁଗର ଚିହ୍ନ ପୃଥିବୀ ମାଟିରୁ ନିଶ୍ଚିହ୍ନ ହୋଇଯିବାର ବହୁତ ବର୍ଷପରେ ଅର୍ଥାତ୍ ପ୍ରାୟ ସାଢ଼େ ଛ'କୋଟି ବର୍ଷ ହେବ ମନୁଷ୍ୟମାନଙ୍କର ଆବିର୍ଭାବ ହୋଇଥିଲା ।

ଏହି ସହାବସ୍ଥାନକୁ ଦେଖି ଖୁବ୍ ଆଶ୍ଚର୍ଯ୍ୟ ଲାଗୁଛି, ଆଖିକୁ ବିଶ୍ୱାସ କରିହେଉନାହିଁ । ପୃଥିବୀ ଇତିହାସ ସଂପର୍କରେ ଆଧୁନିକ ବିଜ୍ଞାନର ସମସ୍ତ ସୂତ୍ର ଓ ସିଦ୍ଧାନ୍ତ ଲୀନ ହୋଇପଡ଼ିଛି ଏହି ଦ୍ୱୀପ ମଧ୍ୟରେ ... ।

ଜୁମିନା ରବିନ୍‌ସନ୍‌ଙ୍କର କାନ୍ଧଉପରେ ହାତରଖି କହିଲେ -''ରବିନ୍, ତୁମେ ଖୁବ୍ ଅଭିଭୂତ ହୋଇପଡ଼ିଛ ନା !''

''ହଁ, ଜୁମିନା, ଚୀନ୍ ସମୁଦ୍ରର ଏହି ଅପରିଚିତ ଦ୍ୱୀପର ନାମ ହେବା ଉଚିତ - ଜୁରାସିକ୍ ଦ୍ୱୀପ, ତମସା ଦ୍ୱୀପ ନୁହେଁ ।''

''ହୁଏତ କେଉଁ ସୁଦୂର ଅତୀତରେ ସଭ୍ୟତାର ଆଲୋକ ପାଇ କୌଣସି ମାନବଗୋଷ୍ଠୀର ବାସସ୍ଥାନ ଏଠାରେ ଗଢ଼ିଉଠିଥିଲା । ସେହି ସମୟରେ ସେମାନଙ୍କ ହାତରେ ବୋଧହୁଏ ନିର୍ମିତ ହୋଇଥିଲା ଏହି ତମସା ପାହାଡ଼ର ଚୂଡ଼ା ଏବଂ ଏହି ଅରଣ୍ୟ ବେଷ୍ଟନୀଘେରା ଆକାଶକୁ ଛୁଉଁଥିବା କାନ୍ଥ ।''

କିଏ କହିପାରିବ କେତେ କାଳର ପୂର୍ବେ ଏହା ଘଟିଥିବ ? ହୁଏତଃ ଏହି ଅତିକାୟ ଅରଣ୍ୟରେ ଥିବା ଭୀଷଣ ଜୀବଜନ୍ତୁମାନଙ୍କର ଆକ୍ରମଣରେ ଏହାକୁ ସୃଷ୍ଟି କରିଥିବା ମଣିଷମାନେ କ୍ରମଶଃ

ନିଃଶେଷ ହୋଇଯାଇଥିବେ । ନଚେତ୍, ଏହା ମଧ୍ୟ ହୋଇପାରେ ଯେ' ସେମାନଙ୍କର ଅଳ୍ପ କେତେକ ବଂଶଧର ବର୍ତ୍ତମାନ ପର୍ଯ୍ୟନ୍ତ ଏ ଦ୍ୱୀପର କଳା ବଣ୍ୟମନୁଷ୍ୟ ଗହଣରେ ବଂଚି ଥାଇପାରନ୍ତି । ଏହାର ସମସ୍ତ ରହସ୍ୟ ଆମ୍ଭକୁ ଉଦ୍ଧାର କରିବାକୁ ହେବ ଏବଂ ତାପରେ ଯଦି ଆମ୍ଭେମାନେ ନିରାପଦରେ ଅରଣ୍ୟର ବାହାରକୁ ଫେରିଯାଇପାରୁ, ତାହାହେଲେ ଏଠାର ଖବର ସାରା ପୃଥିବୀରେ ନିଶ୍ଚୟ ଆଲୋଡ଼ନ ସୃଷ୍ଟି କରିପାରିବ ।''

ଜୁମିନା ରବିନ୍‌ସନ୍‌ଙ୍କ ପାଖକୁ ଆଉଟିକେ ଆଉଜିଯାଇ କହିଲେ -''ରବିନ୍, ଆମେ ଯେ ବର୍ତ୍ତମାନ ସୁଦ୍ଧା ନିରାପଦ ନୋହୁଁ ।''

ନିରାପଦ ପ୍ରସଙ୍ଗ ଶୁଣି ରବିନ୍‌ସନ୍‌ଙ୍କର ମନ ଭାବନା ରାଜ୍ୟରୁ ଫେରିଆସିଲା । ଏଯାବତ୍ ଜାୟାଣ୍ଟୋର କବଳରୁ ଯେ ସେମାନେ ପୁରାପରି ମୁକ୍ତ ହୋଇନାହାନ୍ତି, ତାହା ସେ ଅନୁଭବ କରିବାକୁ ଲାଗିଲେ । ଦୈତ୍ୟଟି ନିଶ୍ଚୟ ଅନ୍ୟ କୌଣସି ଉପାୟରେ ନଦୀପାର ହୋଇ ଜୁମିନାକୁ କରାୟତ୍ତ କରିବାର ଚେଷ୍ଟା କରିବ । ଏତେ ସହଜରେ ସେ ଜୁମିନାକୁ ହାତଛଡ଼ା କରିବାକୁ ଦେବନାହିଁ ।

ରବିନ୍‌ସନ୍ ଉଦ୍‌ବିଗ୍ନ ଅବସ୍ଥାରେ ଉଠି ଠିଆ ହେଲେ । ଜୁମିନାକୁ ମଧ୍ୟ ଧରି ଠିଆ କରାଇଲେ । କିନ୍ତୁ, ସେଠାକାର ରାସ୍ତା ତାଙ୍କୁ ଅଜଣା । ଯଥାଶୀଘ୍ର ଲୁଚିଛପି ଫାଟକ ନିକଟରେ ନ ପହଞ୍ଚିଲେ ରକ୍ଷାନାହିଁ । କାରଣ, ଜାୟାଣ୍ଟୋ ଭଲଭାବରେ ଜାଣିପାରିଛି ଯେ ସେମାନେ ନଦୀପାର ହୋଇ ଆରପଟକୁ ଚାଲିଯାଇଛନ୍ତି । ଏଣୁ ଜୁମିନାକୁ ପାଇବାପାଇଁ ସେ ନିଶ୍ଚୟ ସେଠାକୁ ଆସିବ । ଅତଏବ, ସେଥିପୂର୍ବରୁ ସେମାନଙ୍କୁ ସ୍ଥାନଟି ପରିତ୍ୟାଗ କରିବାକୁ ପଡ଼ିବ । କିନ୍ତୁ ଚତୁର୍ଦ୍ଦିଗ ନିଘଞ୍ଚ ଅରଣ୍ୟ ବେଷ୍ଟିତ ଅଂଚଳ । ଏହାରି ମଧ୍ୟରେ ସେମାନେ ଯିବେ କିପରି ? କେଉଁ ରାସ୍ତା ଦେଇଗଲେ ତାଙ୍କ ଦଳ ଲୋକଙ୍କ ସହିତ ସାକ୍ଷାତ ହୋଇପାରିବ ?

ରବିନ୍‌ସନ୍‌ଙ୍କୁ ପ୍ରଫେସରଙ୍କ କଥା ସ୍ମରଣ ପଡ଼ିଗଲା । ନିରାପଦ ରାସ୍ତା ଖୋଜି ଫାଟକ ପାଖକୁ ଫେରିଯିବେ ନା ଆରପାଖରେ ଲୁଚି ରହି ତାଙ୍କୁ ପ୍ରତୀକ୍ଷା କରିବେ । କିଛି ଗୋଟିଏ ସିଦ୍ଧାନ୍ତରେ ଉପନୀତ ହୋଇପାରିଲେ ନାହିଁ । ତା'ପରେ ସେ ଧୀରସ୍ୱରରେ ଜୁମିନାକୁ ତା'ର ମତାମତ ପଚାରିଲେ ।

ଜୁମିନା କହିଲା - ''ଅନିଶ୍ଚିତ ପଥରେ ପାଦଦେଇ ବିପଦକୁ ଟାଣିଆଣିବା ଅପେକ୍ଷା କିଛିସମୟ ପ୍ରଫେସରଙ୍କୁ ଅପେକ୍ଷା କରିବା ମୋ ମତରେ ଭଲହେବ ।''

ରବିନ୍‌ସନ୍ ଜବାବ ଦେଲେ- ''ତା'ହେଲେ ଏଠାରେ ଅଧିକ ସମୟ ଠିଆ ହେବା ବୁଦ୍ଧିମାନର କାମ ହେବ ନାହିଁ । ଜାୟାଣ୍ଟୋକୁ ବିଶ୍ୱାସ ନାହିଁ,.... କେତେବେଳେ ଆସି ଆମକୁ ଆକ୍ରମଣ କରିପାରେ । ତେବେ, ବର୍ତ୍ତମାନର ପରିସ୍ଥିତିରେ କେଉଁ ଦିଗକୁ ଯିବା କୁହ ତ ? ଗଛ ଉପରକୁ ଉଠିଯିବା ନିରାପଦ ନୁହେଁ । ଏ ହେଉଛି ଆଦିମ ଯୁଗର ଅରଣ୍ୟ । ଗଛ ଉପରେ ଅଜଣା କୌଣସି ଜାନୁଆରର ହାବୁଡ଼ରେ ପଡ଼ି ହୁଏତ ପ୍ରାଣ ଯାଇପାରେ.... ।''

ଜୁମିନା କହିଲା- ''ତାହାହେଲେ କୌଣସି ବଡ଼ ପଥରଟାଏ ଦେଖ । ଦୁହେଁ ଚାରିଆଡ଼କୁ ଆଖି ବୁଲାଇ ଏକ ଛୋଟ ଶୃଙ୍ଗ ଭଳି ଉଚ୍ଚ ପଥର ଖୋଜି ବାହାର କଲେ । ସେହି ପଥର ଦେହରେ ବଡ଼ ଫାଟଟିଏ ଦେଖିବାକୁ ପାଇଲେ । ରବିନ୍‌ସନ୍ ସେହି ଫାଟରେ ଗଛର ଡାଳ ଭାଙ୍ଗି ଖୁନ୍ଦି ଖୁନ୍ଦି ତା' ଭିତର ଅଂଶକୁ ଭଲ ଭାବରେ ପରୀକ୍ଷା କରିନେଲେ । ସେହି ସ୍ଥାନଟି ଥିଲା ନଦୀର ଠିକ୍ ସାମନାରେ । ଦରକାର ପଡ଼ିଲେ ତାହା ପାରି ହୋଇ ଅନ୍ୟପଟକୁ ଚାଲି ଯାଇହେବ । ଅତଏବ ତାହାରି ଭିତରେ ଆତ୍ମଗୋପନ କରିବା ପାଇଁ ସେମାନେ ସ୍ଥିର କଲେ । କେବଳ ଲକ୍ଷ୍ୟ ରଖିବାକୁ ହେବ ଯେ ଜାୟାଣ୍ଟୋର ଦୃଷ୍ଟି ଯେପରି ସେଠାରେ ନ ପଡ଼େ ।



ତା'ପରେ ରବିନ୍‌ସନ୍ କହିଲେ - ''ଜୁମିନା, ତୁମେ ଭିତରକୁ ଯାଇ ବିଶ୍ରାମ ନିଅ । ମୁଁ ଏହିଠାରେ ଠିଆ ହୋଇ ଚାରିଆଡ଼କୁ ଦୃଷ୍ଟି ରଖିଛି । କିଛି ସମୟ ନିରାପଦରେ ରହିଗଲେ ପ୍ରଫେସର ଆମକୁ ଖୋଜି ଏ ସ୍ଥାନକୁ ନିଶ୍ଚୟ ଆସିବେ ।'' ଜୁମିନା ଫାଟ ଭିତରେ ପ୍ରବେଶ କଲେ । ଠିକ୍ ପରକ୍ଷଣରେ ଦୂରରୁ ଏକ ତୀକ୍ଷ୍ଣ ଅସ୍ପଷ୍ଟ ସ୍ୱର ରବିନ୍‌ସନ୍‌ଙ୍କର କର୍ଣ୍ଣଗୋଚର ହେଲା ।

ଦ୍ୱାରଦେଶରେ ସେ ଉତ୍କଣ୍ଠାର ସହିତ ଚାରିଆଡ଼କୁ ସତର୍କ ଦୃଷ୍ଟି ଦେଇ ବସି ରହିଥାନ୍ତି । ନିବିଡ଼ ଅରଣ୍ୟ ମଧ୍ୟରେ ସମୟେ ସମୟେ ନାନା ପ୍ରକାର ବିଚିତ୍ର ଶବ୍ଦ ଭାସି ଆସୁଥାଏ । ତହିଁରୁ କେଉଁଟା

ବନ୍ୟପକ୍ଷୀର ମଧୁର ସ୍ୱର ତ କେଉଁଟା ଜାନୁଆରର ଭୀଷଣ ଗର୍ଜନ ଏବଂ କେଉଁଟା ଦୂରାଗତ ତ ଅନ୍ୟ କେଉଁଟା ଅତି ନିକଟରୁ ଆସିଲା ଭଳି ଜଣା ପଡୁଥାଏ । ଏହିପରି କିଛି ସମୟ ଗଲା ।

ରବିନ୍‌ସନ୍ ସଜାଗ ହୋଇ ବସିରହିଥାନ୍ତି । ହଠାତ୍ ପୁଣି ସେହି ଶବ୍ଦ ଭାସି ଆସିଲା । ଏଥର କିନ୍ତୁ ଲାଗ ଲାଗ ତିନିଥର ଅତି ନିକଟରେ ଶୁଣାଗଲା । ଆଶଙ୍କା ଏବଂ ଆନନ୍ଦରେ ରବିନ୍‌ସନ୍‌ଙ୍କର ଛାତି ଥରିଉଠିଲା । କିନ୍ତୁ ଏ ଶବ୍ଦଟି ଚିହ୍ନିବାରେ ତାଙ୍କର ଭୁଲ୍ ହେଲା ନାହିଁ । ଏହା ଥିଲା ପ୍ରଫେସରଙ୍କ ସଙ୍କେତ ।

ରବିନ୍‌ସନ୍ ଆନନ୍ଦର ଉତ୍ତେଜନାରେ ଠିଆ ହୋଇପଡ଼ି ଫାଟ ଆଡ଼କୁ ମୁହଁ ବୁଲାଇ କହିଲେ - ''ଜୁମିନା, ଶୁଣୁଛ... ? ପ୍ରଫେସର ଆସୁଛନ୍ତି ବୋଲି ତାଙ୍କର ସଂକେତରୁ ଜଣା ପଡୁଛି... ।''

''ହେ ଭଗବାନ ! ଆମ୍ଭଙ୍କୁ ରକ୍ଷା କର ।''- ଜୁମିନା କହୁ କହୁ ଭିତରୁ ବାହାରିଆସି ଆନନ୍ଦରେ ଉତ୍ତେଜିତ ହୋଇ ରବିନ୍‌ସନ୍‌ଙ୍କୁ କୁଣ୍ଢାଇ ପକାଇଲେ ।

ରବିନ୍‌ସନ୍ କହିଲେ - ''ଏ ଯାଏ ଜାୟାଣ୍ଟୋର କୌଣସି ଶବ୍ଦ ଶୁଣାଯାଉନାହିଁ । ତେବେ, ସେ କ'ଣ ତୁମର ଆଶା ଛାଡ଼ିଦେଇ ତା'ର ବାସସ୍ଥଳୀକୁ ଫେରି ଚାଲିଗଲା ?'' କୌଣସି କଥା ନ କହି ନଦୀର ଆରପଟକୁ ଜୁମିନା ଚାହିଁ ରହିଲା- ଯେଉଁଠି ଟିରୋଡ଼୍ୟାକ୍‌ଟିଲର କବଳରେ ସେ ପଡ଼ିଥିଲା, ଆଉ ଜାୟାଣ୍ଟୋ ସାଜିଥିଲା ତା' ପାଇଁ ପ୍ରାଣରକ୍ଷାକର୍ତ୍ତା ।

## ଇୟାମ୍ମୁ ଓ ବ୍ରାକିଓସରାସ୍ :

ରବିନ୍‌ସନ୍ ପ୍ରଫେସରଙ୍କ ସଂକେତର ପ୍ରତ୍ୟୁତ୍ତର ଦେବେ କି ନାହିଁ ସ୍ଥିର କରିପାରିଲେ ନାହିଁ । ତାଙ୍କ ମନରୁ ଏ ଯାଏ ଭୟ ଛାଡ଼ି ନ ଥାଏ । ଆଖପାଖରେ କେଉଁଠି ଜାୟାଣ୍ଟୋ ଯେ' ଲୁଚି ନ ରହିଥିବ ତାହା କିଏ କହିପାରିବ ? ତା' ସମ୍ପର୍କରେ ନିଶ୍ଚିତ ନ ହେବା ପର୍ଯ୍ୟନ୍ତ ଗୋପନୀୟତା ଓ ସତର୍କତା ରକ୍ଷା କରିବାକୁ ହେବ ।

ସେ ଏକଥା ଭାବି ନୀରବ ରହିଲାବେଳେ ପୁନର୍ବାର ସଂକେତର ଧ୍ୱନି ଭାସିଆସିଲା । ଏଥର କିନ୍ତୁ ତାହା ଅଧିକ ସ୍ପଷ୍ଟ ଓ ନିକଟତର ମନେ ହେଲା । ଏହାର ଦିଗ ଜାଣିବା ଆଉ କଷ୍ଟକର ହେଲା ନାହିଁ । ତାଙ୍କର ଠିକ୍ ପଛପଟ ଦେଇ ପ୍ରଫେସର ଆଗେଇ ଆସୁଥାନ୍ତି ।

ତେବେ, ରବିନ୍‌ସନ୍ ଥରକୁ ଥର ସଂକେତର ଧ୍ୱନି ଶୁଣି ମଧ ପ୍ରତ୍ୟୁତ୍ତର ଦେଲେ ନାହିଁ । ପଥର ଆଢୁଆଳରେ ଥାଇ ପଛରେ ଥିବା ଜଙ୍ଗଲ ଆଡ଼କୁ ଚାହିଁ ଠିଆ ହୋଇ ରହିଲେ । ପ୍ରଫେସରଙ୍କ ଦଳବଳ ତାଙ୍କର ଅତି ନିକଟତର ହେଲେ - ପ୍ରତି ସଂକେତ ନେବେ ବୋଲି ସେ ମନେ ମନେ ସ୍ଥିର କରିନେଲେ ।

ଜୁମିନା ମଧ ରବିନସନ୍‌ଙ୍କ ନିକଟକୁ ଆଗେଇ ଆସିଲା ।

ଠିକ୍ ଏହି ସମୟରେ ମଧୁର ''କୁ...କୁ...'' ଶବ୍ଦ ବଦଳରେ ଅରଣ୍ୟ ମଧ୍ୟରୁ ଏକ ଅତି ଭୟଙ୍କର ଶବ୍ଦ ଭାସି ଆସିଲା । ମେଘର ମେଘ ଘର୍ଷଣ ହେବା ଭଳି ଗୁରୁଗମ୍ଭୀର ଗର୍ଜନ



ଏକଶହ ପଚାଶଠାରୁ ଏକଶହ ତିରିଶ କୋଟି ବର୍ଷ ପୂର୍ବେ ଅତିକାୟ ମାଂସାଶୀ ଡାଇନୋସର ଯଥା- ଅଲୋସରାସ ଏବଂ ସିରେଟୋସରାସ୍ ବଞ୍ଚିରହିଥିଲେ । ସମସାମୟିକ କାଳରେ ହିଁ ବ୍ରାକିଓସରାସ ଏବଂ ଡିପ୍ଲୋଡୋକାସ ଭଳି ଅତିକାୟ ତୃଣଭୋଜୀ ଡାଇନୋସରମାନେ ମଧ୍ଯ ମାଂସାଳ ଶରୀର ନେଇ ଘୁରିବୁଲୁଥିଲେ । ମାଂସାଶୀ ଡାଇନୋସରମାନେ ତୃଣଭୋଜୀ ଡାଇନୋସରମାନଙ୍କୁ ଭକ୍ଷଣ କରି କ୍ଷୁଧା ମେଣ୍ଟାଉଥିଲେ ।

ଶୁଣାଗଲା । ଜୁମିନା ଓ ରବିନ୍‌ସନ୍‌ଙ୍କ ପାଇଁ ଏହା କୌଣସି ଅପରିଚିତ ଶବ୍ଦ ନଥିଲା । ତାହା ଥିଲା କାୟାଣ୍ଟୋର ଶବ୍ଦ । ମୁହୂର୍ତ୍ତକ ମଧ୍ୟରେ ସେମାନଙ୍କ ଦେହରେ ଶିହରଣ ଖେଳିଗଲା । ଭୟରେ ଜଡ଼ସଡ଼ ହୋଇ ଜୁମିନା ପଚାରିଲା- ''ଶବ୍ଦଟି କେଉଁ ଦିଗରୁ ଆସୁଛି ଠିକ୍ କରିପାରୁଛ ରବିନ୍.... ?''

ରବିନ୍‌ସନ୍ କୌଣସି ଉତ୍ତର ଦେଲେ ନାହିଁ । କେବଳ ଉତ୍କଣ୍ଠାର ସହିତ ଠିଆ ହୋଇ ରହିଲେ ।

''କୁ..., କୁ..., କୁ...'' ଅତି ନିକଟରେ ପୁଣି ଏହି ଶବ୍ଦ ଶୁଣାଗଲା । ରବିନ୍‌ସନ୍ ଆଉ ମୁହୂର୍ତ୍ତେ ସୁଦ୍ଧା ଡେରି ନ କରି ମୁହଁରେ ଦୁଇହାତ ଆସ୍ତେ କରି ଚାପିରଖି ପ୍ରତି ସଂକେତ ଜଣାଇଦେଲେ-

"କୁ..., କୁ..., କୁ..."

ତା'ପରେ ସେ ଜୁମିନାକୁ କହିଲେ - 'ତୁମେ ଏଥର ଦଉଡ଼ିବା ପାଇଁ ପ୍ରସ୍ତୁତ ହୋଇଯାଅ । ପ୍ରଫେସରଙ୍କ ସଂକେତକୁ ଲକ୍ଷ୍ୟ କରି ଆମକୁ ଧାଇଁବାକୁ ହେବ.... ।"

- "କିନ୍ତୁ, ଜାୟାଣ୍ଟୋ... ?"

- "ପ୍ରଫେସରଙ୍କ ପାଖରେ ପହଞ୍ଚିଯାଇ ପାରିଲେ ଜାୟାଣ୍ଟୋ ଆମର କିଛି କରିପାରିବ ନାହିଁ । ତାକୁ ଆହତ କରିବା ପାଇଁ ଯଥେଷ୍ଟ ଶକ୍ତିଶାଳୀ ଅସ୍ତ୍ର ତାଙ୍କ ନିକଟରେ ରହିଛି... ।"

ରବିନ୍‌ସନ୍‌ଙ୍କ ମୁହଁରୁ କଥା ଶେଷ ନ ହେଉଣୁ ଘୋର ବିକଟ ଶବ୍ଦରେ ଗଗନପବନ ପ୍ରକମ୍ପିତ ହେଲା । ଜାୟାଣ୍ଟୋ ତାଙ୍କର ଅତି ନିକଟରେ ପହଞ୍ଚି ଯାଇଥିଲା । ତା'ର ଗର୍ଜନର ଶବ୍ଦ ଏତେ ସ୍ପଷ୍ଟ ହୋଇ ଉଠୁଥିଲା ଯେ ରବିନ୍‌ସନ୍‌ଙ୍କ ଦ୍ୱାରା ଦିଗ ନିର୍ଣ୍ଣୟ କରିବା ଅସୁବିଧା ହେଲା ନାହିଁ । ଜୁମିନା କହିଲା- "ସର୍ବନାଶ ରବିନ୍ । ମନେ ହେଉଛି ଦୁଇଟିଯାକ ଶବ୍ଦ ଗୋଟିଏ ଦିଗରୁ ଆସୁଛି । ତେବେ, ଜାୟାଣ୍ଟୋ ବୋଧହୁଏ ପ୍ରଫେସରଙ୍କ ପଛରେ ହିଁ ରହିଛି ।"

ରବିନ୍‌ସନ୍ କହିଲେ - "ଆଗ ରାସ୍ତା ଦେଇ ନଦୀ ପାରି ହେବାର କୌଣସି ରାସ୍ତା ନାହିଁ । ତେଣୁ ମୁଁ ଭାବୁଛି ଯେଉଁ ରାସ୍ତା ଦେଇ ମୁଁ ଜାୟାଣ୍ଟୋକୁ ଅନୁସରଣ କରିଥିଲି, ସେ ବୋଧହୁଏ ସେହି ରାସ୍ତାଦେଇ ଆସୁଛି । କିନ୍ତୁ ସେ ଏଠାକୁ ପହଞ୍ଚିବା ପୂର୍ବରୁ ଆମକୁ ପ୍ରଫେସରଙ୍କ ନିକଟରେ ପହଞ୍ଚିବାକୁ ହେବ ।"

"କୁ..., କୁ..., କୁ..."

ରବିନ୍‌ସନ୍‌ଙ୍କୁ ଏହି ସଂକେତ ଅତି ନିକଟତର ବୋଲି ମନେହେଲା । ତେଣୁ ସେ କାଳବିଳମ୍ବ ନ କରି ଜୁମିନାର ହାତଧରି ସେ ଦିଗକୁ ଦଉଡ଼ିବାକୁ ଲାଗିଲେ । ଦଉଡୁ ଦଉଡୁ ଜୁମିନା କହିଲା - "ମୋ ହାତ ଛାଡ଼ି ଦିଅ । ମୁଁ ନିଜେ ଦଉଡ଼ି ଯାଇପାରିବି । ତୁମେ ଆଗକୁ ଚାଲ... ।" କିଛି ବାଟ ଯାଇ ରବିନ୍‌ସନ୍ ଠିଆ ହୋଇଗଲେ ଓ ଦୁଇହାତରେ ମୁହଁକୁ ଚାପି ପ୍ରତ୍ୟୁତ୍ତର ସଂକେତ ଦେଲେ-

"କୁ..., କୁ..., କୁ..."

ତା 'ପରେ ସେ ପୁଣି ଦଉଡ଼ିବାକୁ ଆରମ୍ଭ କଲେ । ତାଙ୍କୁ ଜୁମିନା ଅନୁସରଣ କରି ଚାଲିଥାଏ । ଦଉଡୁ ଦଉଡୁ ରବିନ୍‌ସନ୍ ସାମନାକୁ ଚାହିଁ ଉଲ୍ଲସିତ ହୋଇ ଉଠି କହିଲେ - "ଦେଖ, ଜୁମିନା ! ପ୍ରଫେସର ତାଙ୍କର ଦଳବଳ ଘେନି ଏହି ଆମ ଆଡ଼କୁ ଆଗେଇ ଆସୁଛନ୍ତି... ।"

ଠିକ୍ ଏହି ସମୟରେ ଡାହାଣପଟ ଜଙ୍ଗଲ ମଧ୍ୟରୁ ଗଛଲତା ଭାଙ୍ଗି ପଡ଼ିବାର ଶବ୍ଦ ଶୁଭିଲା ଏବଂ ସେଥି ସଙ୍ଗେ ସଙ୍ଗେ ଜାୟାଣ୍ଟୋର ତୀବ୍ର ଗର୍ଜନ ରବିନ୍ ଓ ଜୁମିନାର କର୍ଣ୍ଣଗୋଚର ହେଲା ।

ଜୁମିନା ଧାଉଁ ଧାଉଁ ଅଣନିଃଶ୍ୱାସୀ ହୋଇ କହିଲା - "ରବିନ୍, ଜାୟାଣ୍ଟୋର ନଜରରେ ଆମେ ପଡ଼ିଯାଇଛୁ । ସେ ଝଡ଼ବେଗରେ ଝପଟି ଆସୁଛି ।"

ଜାୟାଣ୍ଟୋର ବିକଟାଳ ଶବ୍ଦ ଓ ଗର୍ଜନରେ ରବିନ୍‌ସନ୍‌ଙ୍କ ଛାତି କମ୍ପିଉଠିଲା । ସେ ଧୀର କଣ୍ଠରେ କହିଲେ - ''ଗୋଟିଏ ପଟରେ ମୃତ୍ୟୁ ଓ ଅନ୍ୟପଟରେ ଜୀବନ, ଜୁମିନା... । ଯାହାହେଉ, ପ୍ରଫେସର ଆମ୍ଭଙ୍କୁ ଦେଖିପାରିଛନ୍ତି.... ।''

କହୁ କହୁ ରବିନ୍‌ସନ୍ ଠିଆ ହୋଇଗଲେ ଏବଂ ଜୁମିନା ମଧ୍ୟ ଧଇଁସଇଁ ହୋଇ ପାଖରେ ଠିଆ ହେଲା । ଅଳ୍ପଦୂରରେ ପ୍ରଫେସର ଓ କ୍ୟାପ୍‌ଟେନ୍ ତାଙ୍କ ଦଳ ସହିତ କୋଳାହଳ କରିଚାଲିଥାନ୍ତି । ସମସ୍ତଙ୍କ ହାତରେ ମାରଣାସ୍ତ୍ର । ପ୍ରଫେସର ପ୍ରଥମେ ଧାଇଁ ଆସି ଦୁଇବାହୁ ପ୍ରସାରିତ କରି ଜୁମିନାକୁ ତାଙ୍କ ଛାତି ଉପରକୁ କୋଳେଇ ନେଇ କହିଲେ - ''ଜୁମିନା, ଈଶ୍ୱରଙ୍କ ଅନୁକମ୍ପାରୁ ତୁମକୁ ଫେରିପାଇଲୁ । ଆଉ ଭୟ ନାହିଁ... ।''

କ୍ୟାପ୍‌ଟେନ୍ ଓ ରବିନ୍‌ସନ୍ ମଧ୍ୟ ପରସ୍ପରକୁ ଆଲିଙ୍ଗନ କଲେ । କିନ୍ତୁ ଏହି ପୁନର୍ମିଳନର ସମସ୍ତ ଆନନ୍ଦକୁ ବିପନ୍ନ କରିଦେଇ ସେହି ମୁହୂର୍ତ୍ତରେ ଜାୟାଣ୍ଟୋର ଗର୍ଜନ ବନଭୂମି ପ୍ରକମ୍ପିତ କରିଦେଲା ଏବଂ ସେଥି ସଙ୍ଗେ ସଙ୍ଗେ ଶୁଣାଗଲା ତା'ର ଛାତି ଉପରେ ହାତ ବାଡ଼େଇବାର ଶବ୍ଦ ।

ପ୍ରଫେସର ସେହି ଶବ୍ଦଶୁଣି ପଛକୁ ଫେରିଚାହିଁଲେ । ଜାୟାଣ୍ଟୋ ସେମାନଙ୍କର ଦୃଷ୍ଟି ଅଗୋଚରରେ ଥିଲା । କିନ୍ତୁ ଅଭିଯାତ୍ରୀର ଦଳର କୋଳହଳ ସେ ଶୁଣି ପାରିଥାଏ ଓ ତାହାକୁ ଲକ୍ଷ୍ୟ କରି ସେ ଧାଇଁ ଆସୁଥାଏ । ପ୍ରଫେସର କହିଲେ - ''ଗରିଲାମାନେ ଶତ୍ରୁକୁ ଆକ୍ରମଣ କରିବା ପୂର୍ବରୁ ଛାତିରେ ହାତ ଚାପୁଡ଼ା ମାରି ଏହିଭଳି ଶବ୍ଦ କରନ୍ତି । ଜାୟାଣ୍ଟୋ ଏହି ସ୍ଥାନକୁ ଆସିବାପୂର୍ବରୁ ଆମ୍ଭମାନଙ୍କୁ ଏ ସ୍ଥାନ ପରିତ୍ୟାଗ କରିବାକୁ ପଡ଼ିବ ।''

ଏହି ଉତ୍ତେଜନା ଓ ହଟଗୋଳ ମଧ୍ୟରେ ରବିନ୍‌ସନ୍‌ଙ୍କ ନଜର ପଡ଼ି ନଥିଲା ଜଣେ କଳା ମନୁଷ୍ୟ ଉପରେ, ଯିଏ କି ପ୍ରଫେସରଙ୍କ ନିକଟରେ ଛିଡ଼ାହୋଇଥିଲା । ରବିନ୍‌ସନ୍ ତାକୁ ବିସ୍ମୟ ଭାବରେ ଲକ୍ଷ୍ୟ କଲେ । ଏହା ଦେଖି ସେହି ଜଙ୍ଗଲୀ ତା ଭାଷାରେ ପ୍ରଫେସରଙ୍କୁ କ'ଣ କହିଲା ।

ସେ ତାକୁ ଗୋଟିଏ କିଛି ଇଙ୍ଗିତ ଦେଲେ । ଯାହାକି ରବିନ୍‌ସନ୍ ବୁଝିପାରିଲେ ନାହିଁ । ତେବେ ଲୋକଟି ସଙ୍ଗେ ସଙ୍ଗେ ତା' କାନ୍ଧରୁ ବ୍ୟାଗ୍‌ଟିଏ ବାହାର କରି ପ୍ରଫେସରଙ୍କ ଆଡ଼କୁ ବଢ଼ାଇ ଦେଲା । ସେ ସଙ୍ଗେ ସଙ୍ଗେ ସେଥିରୁ ସ୍ମୋକ୍‌ବମ୍‌ଟିଏ ବାହାର କଲେ । ଏହା ଦେଖି ରବିନ୍‌ସନ୍ କହିଲେ, ''ପ୍ରଫେସର, ମୋ ହାତକୁ ରାଇଫଲ୍‌ଟିଏ ବଢ଼ାଇ ଦିଅନ୍ତୁ । ପ୍ରଥମେ ମୋ ଗୁଳିଟା ଜାୟାଣ୍ଟୋର ଛାତିକୁ ଭେଦ କରୁ ।

ପ୍ରଫେସର ମଜା କରି କହିଲେ - ''କାହିଁକି ? ଜୁମିନାକୁ ତମଠାରୁ ଛଡ଼ାଇ ନେଇଥିବାରୁ ତା'ଉପରେ ବହୁତ ରାଗ ହୋଇଛି ନା କ'ଣ ?'' ବିପଦ ସମୟରେ ବି ଏକଥା ଶୁଣି ସମସ୍ତେ ହସିଉଠିଲେ ।

ପ୍ରଫେସର ପୁଣି କହି ଚାଲିଲେ - ''ନା, ରବିନ୍‌ସନ୍, ପ୍ରକୃତିର ନିଜ ହାତରେ ନିର୍ମିତ ଏହି ବିଚିତ୍ର ସୁନ୍ଦର ଅରଣ୍ୟ ଉଦ୍ୟାନର ପରିବେଶକୁ ଆମେ ଏଭଳି ନୃଶଂସ ଭାବରେ ନଷ୍ଟ କରିବା ନାହିଁ । ଯେ କୌଣସି ଉପାୟରେ ହେଉ ଜାୟାଣ୍ଟୋକୁ ଆମ୍ଭେମାନେ ନିରସ୍ତ୍ର କରିବା ଏବଂ ତାକୁ ଆଘାତ

ନ କରି ମଧ ଆତ୍ମରକ୍ଷା କରିବା । ଆଉ ଥରେ ଏଠାକୁ ଆସି ତା'ର ପରିବେଶକୁ ପରୀକ୍ଷା କରିବା । ଏହି ବିସ୍ମୟକର ଜୁରାସିକ୍ ଦ୍ୱୀପ ମଧରେ ଏହି ଜାୟାଣ୍ଟୋ ହେଉଛି ଅନ୍ୟତମ ବିସ୍ମୟକର ଜନ୍ତୁ । ସ୍ମୋକ୍‌ବମ୍‌ର ଧୂଆଁରେ ତାକୁ ବିଭ୍ରାନ୍ତ କରି ସେହି ସୁଯୋଗରେ ଆମେ ଏଠୁ ପଳାଇ ଯାଇପାରିବା ।

ରବିନ୍‌ସନ୍ ପ୍ରଫେସରଙ୍କ କଥାରେ ଅମଙ୍ଗ ହେଲେ ନାହିଁ । ଏତେଟା ଗଭୀର ଚିନ୍ତା କରିବାର ସମୟ ସେ ପାଇ ନଥିଲେ । ଜୁରାସିକ୍ ଦ୍ୱୀପ ତାଙ୍କର ଏକ ଅଭିନବ ଆବିଷ୍କାର । କୌଣସି ପ୍ରକାର ବିକୃତି ନ ଘଟାଇ ତାକୁ ତା'ର ସହଚର ପୃଥିବୀର ମନୁଷ୍ୟମାନଙ୍କ ନିକଟରେ ପହଞ୍ଚାଇ ଦେବାଟା ହିଁ ହେବ ପ୍ରକୃତ ଗୌରବ ଓ କୃତିତ୍ୱର ବିଷୟ ।

ରବିନ୍‌ସନ୍ ପ୍ରଫେସରଙ୍କୁ କହିଲେ - ''ଆପଣ ଠିକ୍ ଚିନ୍ତା କରିଛନ୍ତି । ଭୟରେ ମୁଁ ତ ଏକାବେଳକେ ବିଭ୍ରାନ୍ତ ହୋଇଯାଇଥିଲି... ।''

ପ୍ରଫେସର ଜଙ୍ଗଲ ଆଡ଼କୁ ସ୍ଥିର ଦୃଷ୍ଟିରେ ରବିନ୍‌ସନ୍‌ଙ୍କୁ କହିଲେ- ''ଆପଣ ଯେଉଁ ଅବସ୍ଥାରେ ଓ ପରିସ୍ଥିତିରେ ଥିଲେ, ସେଥିରେ ଏହା ହେବା ସ୍ୱାଭାବିକ ।''

ଜାୟାଣ୍ଟୋର ମୁହୁର୍ମୁହୁଃ ବିକଟାଳ ଶବ୍ଦ ଶୁଣି ପ୍ରଫେସର ଅନ୍ୟ କିଛି କହିବାକୁ ଯାଇ ଅଟକିଗଲେ । ଏତିକିବେଳେ ଜୀବଟିର ବିଶାଳକାୟ ଶରୀର ନିଘଞ୍ଚ ବୃକ୍ଷଲତା ଭେଦ କରି ଦେଖାଗଲା ।

ରବିନ୍‌ସନ୍ ଜୁମିନାକୁ ଟାଣିନେଇ ସମସ୍ତଙ୍କ ପଛରେ ଲୁଚାଇ ଦେଲେ । ପ୍ରଫେସର ସେହି ବନ୍ୟ କଳାମନୁଷ୍ୟଟାକୁ ଇଙ୍ଗିତ କରି କ'ଣ ସବୁ ଗୁଣୁଗୁଣୁ ହୋଇ କହିଲେ । ସେହି ଦୁର୍ବୋଧ୍ୟ ଜଙ୍ଗଲୀଭାଷାକୁ କେବଳ ତା'ଛଡ଼ା ଅନ୍ୟ କେହି ବୁଝିପାରିଲେ ନାହିଁ । ଏହାପରେ ସେହି କଳାମନୁଷ୍ୟଟି ସମସ୍ତଙ୍କୁ ଇଙ୍ଗିତ ମାଧ୍ୟମରେ ଦଉଡ଼ିବାକୁ ନିର୍ଦ୍ଦେଶ ଦେଲା ଏବଂ ନିଜେ ଧାଇଁବାକୁ ଲାଗିଲା । ଜୁମିନାକୁ ଧରି ଅନ୍ୟମାନେ ତାକୁ ଅନୁସରଣ କରି ଚାଲିଲେ । କେବଳ ପ୍ରଫେସର ସେଠାରେ ଛୋଟ ବମ୍ ଧରି ଠିଆ ହୋଇ ରହିଲେ ।

ଜାୟାଣ୍ଟୋ ବନଭୂମି ପ୍ରକମ୍ପିତ କରି ଧାଇଁ ଆସି ହଠାତ୍ ଠିଆ ହୋଇଗଲା । ତା'ର ଦୃଷ୍ଟି ପ୍ରଫେସରଙ୍କ ଉପରେ ନ ଥିଲା । ପଳାୟନ କରୁଥିବା ଜୁମିନାର ଦଳବଳ ଉପରେ ହିଁ ଥିଲା । ହଠାତ୍ ତାକୁ ସେ ଦଳ ଭିତରେ ଥିବାର ଜାଣିପାରି ସେ ତା'ର ଗତିପଥ ପରିବର୍ତ୍ତନ କରି ସେହି ଆଡ଼କୁ ଯିବାପାଇଁ ଆରମ୍ଭ କଲା ।

ପ୍ରଫେସର ଏହା ଜାଣିପାରିଲେ । ଆଉ ତିଳେମାତ୍ର ବିଳମ୍ବ ନ କରି ବୋମାଟିକୁ ତା' ନିକଟକୁ ନିକ୍ଷେପ କରିଦେଲେ । ଚତୁର୍ଦ୍ଦିଗ କମ୍ପନ ସୃଷ୍ଟିକରି ସ୍ମୋକ୍‌ବମ୍‌ଟି ଫାଟିଗଲା । ନିକଟବର୍ତ୍ତୀ ସମଗ୍ର ଜଙ୍ଗଲଟି ଘନ ଧୂଆଁରେ ଅନ୍ଧକାର ହୋଇଗଲା ।

ବୋମା ଫୁଟିବା ଶବ୍ଦ ଶୁଣି ରବିନ୍‌ସନ୍ ଓ କ୍ୟାପ୍‌ଟେନ୍ ଦଉଡୁ ଦଉଡୁ ଅଟକିଗଲେ । ପଛକୁ ଫେରି ଚାହିଁବାରୁ ପ୍ରଫେସର ସେମାନଙ୍କ ଆଡ଼େ ଦଉଡ଼ି ଆସୁଥିବାର ଦେଖିବାକୁ ପାଇଲେ ।

ଅନ୍ୟମାନଙ୍କଠାରୁ ବନ୍ୟ ଜଙ୍ଗଲୀ ମନୁଷ୍ୟଟା ଅନେକଦୂର ଆଗେଇ ଯାଇଥିଲା । ଜୁମିନା ସେମାନଙ୍କ ସାଙ୍ଗରେ ଥିଲା । ପ୍ରଫେସର ଜଙ୍ଗଲୀ ଭାଷାରେ କ'ଣ କହି ଡାକ ମାରିବାରୁ ସଙ୍ଗେ ଜଙ୍ଗଲୀ ମନୁଷ୍ୟଟା ଅନ୍ୟମାନଙ୍କୁ ଧରି ଠିଆ ହୋଇଗଲା । ପ୍ରଫେସର କ୍ୟାପ୍‌ଟେନ୍ ଆଡ଼କୁ ଚାହିଁ କହିଲେ- ''ଏଥର କିଛି ସମୟ ପାଇଁ ଆମ୍ଭେମାନେ ନିଶ୍ଚିନ୍ତ ହୋଇପାରିବା । କାରଣ ଏ ଘନ ଧୂଆଁ ମଧ୍ୟରେ ଜାୟାଣ୍ଟୋ ନିଶ୍ଚୟ ବ୍ୟତିବ୍ୟସ୍ତ ହୋଇପଡ଼ିବ ଏବଂ ତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଯିବ । ତାହାରି ମଧ୍ୟରେ ଆମେ ନିରାପଦ ସ୍ଥାନରେ ପହଞ୍ଚିଯାଇ ପାରିବା । ଆଗରେ ଥିବା ପାଚେରୀର ଫାଟକଟି ବନ୍ଦ କରି ଜାହାଜ ନିକଟକୁ ଚାଲିଯିବା । ଜୁମିନାକୁ ଫେରି ପାଇଲୁ - ଏଥର ଆଉ ଚିନ୍ତାର କାରଣ ନାହିଁ... ।''

## ଜାୟାଣ୍ଟୋ କବଳରୁ ଖସିଲେ :

ରବିନ୍‌ସନ୍ ଚାଲୁଚାଲୁ କଳା ମନୁଷ୍ୟଟିକୁ ଲକ୍ଷ୍ୟ କରି ପଚାରିଲେ - ''ଆମ ଭିତରେ ଏହି ନୂଆ ସାଥି ଜଣକ କିଏ ?''

କ୍ୟାପ୍‌ଟେନ୍ ହସି ହସି ଜବାବ ଦେଲେ - ''ଏ ହେଉଛି ପ୍ରଫେସରଙ୍କ ଅନ୍ୟ ଏକ ଆବିଷ୍କାର.... ।'' କଥାର ଖିଅ ଧରି ପ୍ରଫେସର ତାଙ୍କୁ କହିଲେ - ''ଯେଉଁ ଯୁବତୀଟିକୁ ବଣର ଜଙ୍ଗଲୀ ଲୋକେ ଦେବତାଙ୍କ ନିକଟରେ ଉତ୍ସର୍ଗ କରିବା ପାଇଁ ଆୟୋଜନ କରିଥିଲେ, ସେ ହେଉଛି ଏହାର ଏକମାତ୍ର ସନ୍ତାନ । ଏମାନଙ୍କ ସମାଜରେ ପୁରୋହିତ ହେଲା ଦଣ୍ଡମୁଣ୍ଡର ହର୍ତ୍ତାକର୍ତ୍ତା । ସମସ୍ତେ ଚାହିଁଲେ ମଧ୍ୟ ତା'ଆଦେଶ ଟଳିବ ନାହିଁ । ହଁ, ଏହାର ନାମ 'ଇୟାମ୍ବୁ' ।

ରବିନ୍‌ସନ୍ ପଚାରିଲେ - 'ବର୍ତ୍ତମାନ ସେ ଝିଅଟି କେଉଁଠି ?'

''ଅବଶ୍ୟ, ସେ ଏବେ ୟାଙ୍କ ନିକଟରେ ଅଛି, କିନ୍ତୁ ନିଶ୍ଚିନ୍ତରେ ନାହିଁ । ସେଥିପାଇଁ ଲୋକଟି ଆମ ସହିତ ଗୋପନରେ ଦେଖା କରିବା ପାଇଁ ଏତେ ଉଚ୍ଚ ପାଚେରୀ ଡେ଼ଇଁ ଜଙ୍ଗଲ ଭିତରେ ପଶିଆସିଛି । ଫେରିବା ରାସ୍ତାରେ ତା' ସହିତ ମୋର ଦେଖାହେଲା । ତା'ର ଭୟ ହେଉଛି, ଆମ୍ଭେମାନେ ଦ୍ୱୀପ ଛାଡ଼ିଦେଇ ଚାଲିଗଲେ ପୁରୋହିତ ପୁଣି ତା'ର ଝିଅଟିକୁ ଟେକି ନେଇଆସିବ । ମୋର ଦୁଇପାଦକୁ ଧରି ଛାତିଫଟା କ୍ରନ୍ଦନ କରି ସେ ଭାଙ୍ଗି ପଡ଼ିଥିଲା । ଏକମାତ୍ର ସନ୍ତାନର ଯେ ଏଭଳି ମର୍ମନ୍ତୁଦ ପରିଣତି ଘଟିବ, ତାହା ସେ ସହ୍ୟ କରିପାରୁନାହିଁ । ତେଣୁ ଆମେ ଦ୍ୱୀପ ଛାଡ଼ିଯିବା ସମୟରେ ସେ ବାପଝିଅ ମଧ୍ୟ ଆମ ସହିତ ଏଠାରୁ ଚାଲିଯିବାକୁ ଚାହାନ୍ତି । ମୁଁ ତାକୁ କଥା ଦେଇଛି ଯେ, ଏଠାରୁ ଫେରିଗଲେ କୌଣସି ଏକ ମିଶନ୍ ଆଶ୍ରମରେ ସେମାନଙ୍କୁ ରଖି ସମାଜରେ ଉପଯୁକ୍ତ ମଣିଷ ରୂପେ ଗଢ଼ିବାର ପ୍ରୟାସ କରିବି ।''

ରବିନ୍‌ସନ୍ କହିଲେ - ''ଅରଣ୍ୟର ଏହି କମନୀୟ ପରିବେଶରେ ସ୍ନେହ, ପ୍ରେମ, ଭଲ ପାଇବା - ଈଶ୍ୱର ସୃଷ୍ଟିରେ ସବୁକିଛି ଦେଖିବାକୁ ମିଳୁଛି । ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଛି, ଏହାର ଅନ୍ଧକାରମୟ ଜୀବନ ଆଲୋକର ସ୍ପର୍ଶ ପାଇଁ ଆଲୋକମୟ ହୋଇଉଠୁ ।''

ଏହିଭଳି କଥା କହି କହି ସେମାନେ ଆଗେଇ ଚାଲିଲେ । ଇୟାମ୍ବୁ ସେମାନଙ୍କୁ ରାସ୍ତା ବତାଇ ଦେଲା ।

-ଇୟାମ୍ବୁ..., ଶରୀର ସୁଗଠିତ ଓ ବଳିଷ୍ଠ । ଆଖିରେ ବୁଦ୍ଧିର ଝଲକ । ତା'ର ପ୍ରତ୍ୟେକ ଭଙ୍ଗୀରେ ପ୍ରଫେସରଙ୍କ ଦଳର ପ୍ରତ୍ୟେକ ଲୋକପ୍ରତି କୃତଜ୍ଞତା ଓ ଶ୍ରଦ୍ଧା ଫୁଟି ଉଠୁଥିଲା । ଦ୍ରୁତଗତିରେ ଗଛଲତାକୁ ଆଡ଼େଇ ସେ ସମସ୍ତଙ୍କୁ ନେଇ ଆଗକୁ ମାଡ଼ି ଚାଲିଥାଏ । ଜୁମିନା ଏଥର ରବିନ୍‌ସନ୍‌ଙ୍କ ପାଖାପାଖି ଚାଲିଥାନ୍ତି । ଚାଲୁ ଚାଲୁ ସେ ତାଙ୍କର ସବୁ ପୂର୍ବ ଅଭିଜ୍ଞତା ଶୁଣାଇ ଚାଲିଥାନ୍ତି ।

ଏହି ସମୟରେ ସେମାନେ ସକାଳେ ପାର ହୋଇଯାଇଥିବା ହ୍ରଦଟି ସମ୍ମୁଖରେ ପହଞ୍ଚିଲେ । ଜୁମିନା କହିଲା - ''ମୋତେ ଜାୟାଣ୍ଟୋ ଦୁଇ ହାତରେ ଟେକି ଧରି ଏହିଠାରେ ହ୍ରଦ ପାର ହୋଇଥିଲା । ଜଳ ତା'ର ଗଳାଯାଏ ହୋଇଥିଲା ।''

ପ୍ରଫେସର କହିଲେ - ''ପ୍ରଥମଥର ଏହିଠାରେ ଆମେ ଆମର କେଇଜଣ ସାଥୀଙ୍କୁ ହରାଇଥିଲୁ । ଜଳ ମଧ୍ୟରେ 'ପ୍ଲାଟିଓସର' ମାନଙ୍କର ବାସସ୍ଥଳୀ । ମନୁଷ୍ୟଭଳି ଜୀବଙ୍କୁ ସେହି ଜନ୍ତୁମାନେ ଦଣ୍ଡକିରୀ ମାଛଭଳି ଗିଳି ପକାଇଲେ । ଦୁଇଟି ଭେଳା ଦୁଇପାଖରେ ରଖାଯାଇଛି- ଚାଲ, ଆମେ ତାହାରି ଉପରେ ବସି ପାର ହୋଇଯିବା । ଇୟାମ୍ବୁ ଏଗୁଡ଼ିକୁ ତିଆରି କରିଛି ।''

ପ୍ରଥମେ ଦଳର ସହକର୍ମୀମାନଙ୍କୁ ହ୍ରଦର ଆରପଟରେ ଛାଡ଼ିଆସିଲା ଇୟାମ୍ବୁ । ଉତ୍ସାହ ଓ ଆନନ୍ଦରେ ସେ ଅଧିର ହୋଇପଡୁଥାଏ । ପ୍ରଫେସରଙ୍କ ନିର୍ଦ୍ଦେଶକୁ ସେ ଅପେକ୍ଷା ନ କରି ଯେ କୌଣସି ଉପାୟରେ କାତ ବଢ଼ାଇ ନେଇ ଯାଉଥାଏ ।

ଦ୍ୱିତୀୟ ଥରପାଇଁ ଭେଳାରେ କ୍ୟାପ୍‌ଟେନ୍, ରବିନ୍‌ସନ୍, ଜୁମିନା ଓ ପ୍ରଫେସର ଉଠିଲେ । ଇୟାମ୍ବୁ କାତମାରି ଭେଳାକୁ ଆଗକୁ ବୋହିନେଲା । ସେହି ସମୟରେ ଆରପଟରେ କୋଳାହଳ ଶୁଣାଗଲା । ସମସ୍ତେ ସବିସ୍ମୟରେ ସେପଟକୁ ଚାହିଁଲେ ।

ଭୀତ ଚକିତ ସ୍ୱରରେ ଇୟାମ୍ବୁ କହିଲା - ''ଦାନବ... ଦାନବ.... । ସେହିକ୍ଷଣି ପାହାଡ଼ର ଅନ୍ୟପାଖ ଜଂଗଲ ଭାଂଗି ଗୋଟିଏ ଚଳନ୍ତି ପାହାଡ଼ ଭଳି ଜନ୍ତୁଟାଏ ଦୃଶ୍ୟମାନ ହେଲା ।

ତା'ର ଉଚ୍ଚତା ଗଛ ସମାନ ଏବଂ ଗଳା ମୋଟା ଓ ଲମ୍ବା । ଏହା ଉପରେ ଏକ ବିଶାଳ ଟୋପି ଆକୃତିର ମୁଣ୍ଡ । ପାଦ ଚାରିଟି ଗୋଟିଏ ଗୋଟିଏ ଗଛର ଗଣ୍ଡିଭଳି । ସେହି ଚତୁଷ୍ପଦ ପ୍ରାଣୀଟିର ଗତି ଅତି ମନ୍ଥର । ବିଶାଳକାୟ ଶରୀର ଧକ୍କାରେ ଗଛ ଭାଂଗିପଡ଼ି ଭୂଇଁରେ ଲୋଟିପଡୁଥାଏ । ସେଥିପ୍ରତି ତା'ର ତିଳେମାତ୍ର ନଜର ନଥାଏ । ଏକ ନିର୍ଦ୍ଦିଷ୍ଟ ଗତିରେ ସେହି ଚଳନ୍ତି ପାହାଡ଼ଭଳି ଜନ୍ତୁଟି ଜଳଆଡ଼କୁ ଆଗେଇ ଆସୁଥାଏ । ଆଉ ଗଳା ଉଠାଇ ଗଛର ଅଗ୍ରଭାଗର କଅଁଳିଆ ପତ୍ରଗୁଡ଼ିକୁ ପାଟିଭିତରେ ଭର୍ତ୍ତି କରିନେଉଥାଏ । ତା' ବିଶାଳ ଶରୀର ଭାରସାମ୍ୟ ରକ୍ଷା କରୁଥିଲା ଗୋଟିଏ ଦୀର୍ଘ ଓ ଅତି ସ୍ଥୂଳ ଲାଞ୍ଜ ।



ଭେଳାରେ ଥିବା ସମସ୍ତେ ଭୟରେ ବାକ୍‌ରୁଦ୍ଧ ହୋଇଗଲେ । ଆଗରୁ ଯେଉଁ ଅଭିଯାତ୍ରୀ ଜଳକୁ ଇୟାମ୍ଭୁ ଆରପଟେ ଛାଡ଼ିଦେଇ ଆସିଥିଲା, ସେମାନେ ପ୍ରାଣ ବିକଳରେ ଏଆଡ଼େ ସେଆଡ଼େ ପଳାୟନ କଲେ ।

ପ୍ରଫେସର ଚିତ୍‌କାର କରି କହିଉଠିଲେ - ''ଗଛ ଉହାଡ଼ରେ ସମସ୍ତେ ଛିଡ଼ା ହୋଇଯାଅ । କେହି ତାକୁ ବିଚଳିତ କରନାହିଁ । ଭୟ ନାହିଁ । ସେ ଜନ୍ତୁ ତୁମକୁ ଆକ୍ରମଣ କରିବ ନାହିଁ ।''

କ୍ୟାପ୍‌ଟେନ୍, ରବିନ୍‌ସନ୍ ଓ ଜୁମିନା ବିସ୍ଫାରିତ ନୟନରେ ସ୍ଥିରହୋଇ ଜନ୍ତୁଟି ଆଡ଼କୁ ଅନାଇ ରହିଥିଲେ । ସେମାନେ ଯେଭଳି ମୃତ୍ୟୁର ଦାନବକୁ ଦେଖିବାକୁ ପାଉଛନ୍ତି ।

ଲୁମିନା ପ୍ରଫେସରଙ୍କୁ ପଚାରିଲେ - ''ଏ କେଉଁ ଜନ୍ତୁ ? ଯାହାକି ଗୋଟିଏ ମାଂସର ପାହାଡ଼ଭଳି ଛିଡ଼ା ହୋଇଛି ?'' ଲୁମିନାର ପ୍ରଶ୍ନବାଚୀ ମୁହଁଆଡ଼କୁ ସମସ୍ତେ ଅନାଇ ପ୍ରଫେସରଙ୍କ ଆଡ଼କୁ କାନ ପାରିଲେ ।

ପ୍ରଫେସର କହିଲେ - ''ଶରୀରଟା ସିନା ପାହାଡ଼ ଭଳି, କିନ୍ତୁ ସ୍ୱଭାବ ଅତି ନମ୍ର । ନିରାମିଷଭୋଜୀ ଏହା ଏକ ଡାଇନୋସର - ନାମଟି ତା'ର 'ବ୍ରକିଓସରାସ୍' । ଡାଇନୋସରମାନଙ୍କ ମଧ୍ୟରେ ସବୁଠୁ ଦୀର୍ଘ ଶରୀରର ଅଧିକାରୀ ଏହି ଜନ୍ତୁଟି ।

ରବିନ୍ସନ୍ ପଚାରିଲେ - ''ପାହାଡ଼ଭଳି ଶରୀର ନେଇ ଏହା ଚଲାବୁଲା କରୁଛି । ଅଥଚ ଆତ୍ମରକ୍ଷା ପାଇଁ ତା'ର ତ' କୌଣସି ବ୍ୟବସ୍ଥା ଦେଖାଯାଉନାହିଁ ।''

ପ୍ରଫେସର କହିଲେ - ''ହଁ, ସେ ବ୍ୟବସ୍ଥା ଅଛି ଯେ' ହେଲେ ତାହା ସେତେଟା କାର୍ଯ୍ୟକାରୀ ନୁହେଁ । ଏଣୁ ବିପଦ ଏହାର ପାଖେ ପାଖେ ଲାଗି ରହିଥାଏ । ପୁଣି ଏହା ମାଟିଉପରେ ଖୁବ୍ ଭଲଭାବରେ ଚାଲିପାରେ ନାହିଁ । ସେଥିପାଇଁ ତ ସେ ଅଧିକ ସମୟ ଜଳରେ ପଡ଼ିରହେ । ଜଳଭିତରେ ତା'ର ବିଶାଳକାୟ ଶରୀରଟି ବୁଡ଼େଇ ଦେଇ ହାଲୁକା ଅନୁଭବ କରେ । ତା'ଛଡ଼ା ମାଂସାଶୀ ପ୍ରାଣୀମାନେ ତାକୁ ସହଜରେ ଆକ୍ରମଣ କରିପାରନ୍ତି ନାହିଁ ।''

ଜାୟାମ୍ନ ପ୍ରଫେସରଙ୍କର କୌଣସି କଥା ବୁଝିପାରିଲା ନାହିଁ । ସେ ଭେଳାକୁ ସ୍ଥିର କରି ଭସାଇ ରଖି ତୀକ୍ଷ୍ଣ ଦୃଷ୍ଟିରେ ସେମାନଙ୍କର କଥାବାର୍ତ୍ତାକୁ ଲକ୍ଷ୍ୟକରି ତାହା ବୁଝିବାକୁ ଚେଷ୍ଟା କରୁଥାଏ । ପ୍ରଫେସର ଶୟାମ୍ନ ଆଡ଼କୁ ଅନାଇ କହିଲେ- ''ଶୀଘ୍ର ଏଠାରୁ ପଳାଇ ଚାଲ । କାରଣ ଜଳରେ ମଧ୍ୟ ଆମର କମ୍ ଶତ୍ରୁ ନାହାନ୍ତି ।''

ଛୟାମ୍ନ ସଙ୍ଗେ ସଙ୍ଗେ ଭେଳାକୁ ଆଗେଇ ନେବାକୁ ଚେଷ୍ଟାକଲା ।

ପ୍ରଫେସର ପୁଣି ସେହି ବୃହତ୍ ଜନ୍ତୁଟି ବିଷୟରେ କହିବା ଆରମ୍ଭ କଲେ - ''ଏହି ଜନ୍ତୁଟିର ମାଂସଳ ତଥା ଓଜନିଆ ପଛଗୋଡ଼ ଦୁଇଟି ଅପେକ୍ଷା ଆଗଗୋଡ଼ ଦୁଇଟି ଦୀର୍ଘତମ ଏବଂ ଗଳାଟି ଜିରାଫ୍‌ର ଗଳାଭଳି ଲମ୍ବ । ଏମାନଙ୍କର ଏକ ସ୍ୱଜାତି ଅଛନ୍ତି, କିନ୍ତୁ ତାହା ଆମିଷାଶୀ । ଏହାର ଶରୀରଟି ଟିରାନୋସରାସ୍ ରେକ୍ସ୍ ଭଳି ଏବଂ ଏହା ପଛ ଦୁଇପାଦ ଉପରେ ଭରାଦେଇ ଚାଲେ । ଜୀବଟିର ଛାତିପାଖରେ ଦୁଇଟି ହାତଭଳି ଅଙ୍ଗ ରହିଛି । ଏହାକୁ 'ଡିପ୍ଲୋକାସ୍' ବୋଲି କହନ୍ତି । ଏହାର ଗଳା ବ୍ରାକିଓସରାସ୍ ଭଳି ଲମ୍ବା ଓ ମଥାଟି ଆକାରରେ ଛୋଟ ।

''ଏ କ'ଣ ବର୍ତ୍ତମାନ ଜଳ ଭିତରକୁ ଆସିବ କି ? ତାହାହେଲେ ତ' ଆମର ଭେଳା ବୁଡ଼ିଯିବ ।'' - ଭୟରେ ଲୁମିନା କହିଲା ।

ପ୍ରଫେସର ହସିଉଠିଲେ ଏବଂ କହିଲେ - ''ସେ ଭୟ ନାହିଁ । ତା' ପୂର୍ବରୁ ଆମେ ଆରପଟରେ ପହଞ୍ଚି ସାରିଥିବା ।'' ସେ ଏହା କହୁ କହୁ ଭେଳା ଆସି ହ୍ରଦ କୂଳରେ ଲାଗିଲା । ଛୟାମ୍ନ ଚଟାପଟ୍ ଓହ୍ଲାଇପଡ଼ି ଭେଳାଟିକୁ ଖୁବ୍ ଜୋର୍‌ରେ ଟାଣି ଧରିଲା । ଅନ୍ୟମାନେ ଜଣ ଜଣ କରି ଓହ୍ଲାଇ ଆସିଲେ ।

କୂଳରେ ଯେଉଁମାନେ ଭୟରେ ଗଛ ଆଢୁଆଳରେ ଆତ୍ମଗୋପନ କରିଥିଲେ, ସେମାନେ ସମସ୍ତେ ବାହାରିଆସି ଏକାଠି ମିଶିଗଲେ । ପ୍ରଫେସର ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ - ''ନିର୍ଭୟରେ ଆଗକୁ ମାଡ଼ିଚାଲ । ଏହି ଜନ୍ତୁ ଆମକୁ କେବେହେଲେ ଫେରିଚାହିଁବ ନାହିଁ କି ଆମର କିଛି କ୍ଷତି କରିବନାହିଁ ।''

## ଆଖି ଆଗରେ ଡାଇନୋସରଙ୍କ ଲୀଳାଖେଳା :

ପ୍ରଫେସରଙ୍କ କଥା ଶେଷ ନହେଉଣୁ ସମ୍ମୁଖରେ ଏକ ବିକଟ ଶବ୍ଦ ଓ ତା' ସଙ୍ଗେ ସଙ୍ଗେ ଗଛଲତା ଭାଙ୍ଗିବାର ଶବ୍ଦ ଶୁଣାଗଲା । ଆଗକୁ ପାଦେ ଦୁଇପାଦ ଯାଇ ସମସ୍ତେ ଅଟକିଗଲେ ଏବଂ ଭୟରେ ସେ ଦିଗକୁ ଚାହିଁ ରହିଲେ ।

ଜୁମିନା ଜାୟାଣ୍ଟୋର ଆଗମନ ଆଶଙ୍କାରେ ଆତଙ୍କିତ ହୋଇଯାଇ ପ୍ରଫେସରଙ୍କ ନିକଟକୁ ଲାଗିଆସିଲା ।

ଗୋଟିଏ ଅତିକାୟ ବ୍ରାକିଓସରାସ୍ ମହାଆନନ୍ଦରେ ଗଛର ତାଳପତ୍ର ଭାଂଗି ଖାଉଥିଲା ଏବଂ ମନ୍ଥର ଗତିରେ ଆଗକୁ ମାଡ଼ି ଚାଲୁଥିଲା । ଜଙ୍ଗଲ ଭିତରୁ ଏକ ବିକଟ ଶବ୍ଦ ଶୁଣି ତା'ର ଖାଇବା ବନ୍ଦ ହୋଇଗଲା । ସେ ହ୍ରଦଆଡ଼କୁ ଦ୍ରୁତଗତିରେ ଆଗେଇବାକୁ ଲାଗିଲା । ଠିକ୍ ଏହି ସମୟରେ ଅତର୍କିତ ଭାବରେ ଜଂଗଲ ଭାଂଗି ଆଉ ଗୋଟିଏ ଦାନବ ମାଡ଼ି ଆସିବାର ଦେଖାଗଲା ।

ତା' ଦେହର ରଂଗ ପିଂଗଳ । ଆଉ ପିଠି ଉପରେ ଛପାଛପା ଦାଗ ଥାଏ । ମୁହଁଟି ଖୁବ୍ ବିଶାଳକାୟ ଏବଂ କଦାକାର ଦେଖାଯାଉଥାଏ । ସେଥିରେ ଧାଡ଼ିଧାଡ଼ି ହୋଇ ଦୀର୍ଘକାୟ ଦାନ୍ତ ଥାଏ । ତା' ଛାତି ଉପରେ ଦୁଇଟି ଶକ୍ତହାଡ଼ ଓ ହାତରେ ଖୁବ୍ ତୀକ୍ଷ୍ଣ ନଖ ଥାଏ । ସେହି ବିଶାଳକାୟ ଜନ୍ତୁଟି ଧାଇଁଆସି 'ବ୍ରାକିଓସରାସ୍'ର ପିଠି ଉପରକୁ ଲଂପ ପ୍ରଦାନ କରି ମାଡ଼ିବସିଲା ଏବଂ ତା'ର ଲମ୍ବା ଗଳାଟିକୁ କାମୁଡ଼ି ଧରିଲା ।

ନିରୁପାୟ 'ବ୍ରାକିଓସରାସ୍'ର ପାହାଡ଼ଭଳି ଶରୀରଟା କଂପିବାକୁ ଲାଗିଲା । ତା'ପରେ ସେ ଦୁଇପାଦ ଭାଂଗି ପଡ଼ି ମାଟିଉପରେ ବସିପଡ଼ିଲା । ଗଳାଟିକୁ ବାରମ୍ବାର ଏପଟ ସେପଟ କରି ଶତ୍ରୁ କବଳରୁ ରକ୍ଷାପାଇବା ପାଇଁ ଚେଷ୍ଟା କଲା । କିନ୍ତୁ ତା'ର ବିଶାଳ ଶରୀରଟା ଥିଲା ତା'ର ପ୍ରଧାନ ଶତ୍ରୁ ।

ଦାନବଟି ତା' ଉପରେ ବସି ମାଂସପେଶୀଗୁଡ଼ିକୁ ନଖରେ ଆମ୍ପୁଡ଼ି ଦାବୁଡ଼ି କ୍ଷତବିକ୍ଷତ କରୁଥାଏ । ଥରକୁ ଥର ତା'ର ଗଳାର ଚାରିପାଖରେ କାମୁଡ଼ି ମେଞ୍ଚା ମେଞ୍ଚା ମାଂସ ବାହାର କରି ଆଣୁଥାଏ । ରକ୍ତ ଓ ମାଂସପେଶୀ ମାଟି ଉପରେ ଛିଟିକି ପଡୁଥାଏ ।

'ବ୍ରାକିଓସରାସ୍'ର ଅସହାୟ ମୃତ୍ୟୁବରଣ - ପ୍ରଫେସର ଓ ତାଙ୍କ ସାଥୀମାନେ ଦେଖୁଥାନ୍ତି । କ୍ରମେ ଜୀବଟି ହାଲିଆ ହୋଇପଡୁଥାଏ । ଥରୁଟିଏ ମାତ୍ର ଗଳା ବଙ୍କେଇବାର ଶକ୍ତି ନଥାଏ । ଶେଷରେ ସେ ଧଇଁସଇଁ ହେବାକୁ ଲାଗିଲା । ପାଟିଦେଇ ଗଛର ତାଳପତ୍ରଗୁଡ଼ିକର ଖଦଡ଼ା ଅଂଶ ବାହାରି ଆସିଲା ଏବଂ ସେହି ସମୟରେ ତା'ର ଜୀବନର ପରିସମାପ୍ତି ଘଟିଲା ।

ଏହାପରେ ଦାନବଟି· ତା' ପିଠି ଉପରେ ବସି ମହାଆନନ୍ଦରେ ପୁଳା ପୁଳା କରି ମାଂସ ଗିଳିବାକୁ ଲାଗିଲା । ପ୍ରଫେସର ମନେ ମନେ କହିଉଠିଲେ - ''ମାତ୍ର କେତୋଟି ମିନିଟ୍ ମଧରେ ବ୍ରାକିଓସରାସ୍ ଯଦି ହ୍ରଦ ମଧ୍ୟରେ ପହଞ୍ଚି ପାରିଥା'ନ୍ତା, ତା'ହେଲେ ଏଭଳି ଭାବରେ ତା'ର ଜୀବନଟି ବିନାଶ ଘଟି ନଥାନ୍ତା ।''



ତା'ପରେ ପ୍ରଫେସର ନିର୍ଦ୍ଦେଶ ଦେଲେ - ''କୌଣସି ଶବ୍ଦ ନକରି ଆଗକୁ ଚାଲ । କାରଣ ଯଦି ଏହା ଆମ ଉପସ୍ଥିତି ଜାଣିପାରିବ, ତାହାହେଲେ ସେ ଭାବିବ ଯେ' ଆମେ ତା' ଖାଦ୍ୟକୁ ଭାଗ ବସାଇବା ପାଇଁ ଆସିଛୁ । ତେଣୁ ସେ ଆମକୁ ଆକ୍ରମଣ କରିବାକୁ ଆରମ୍ଭ କରିଦେବ ।''

ନିଃଶବ୍ଦରେ ଅଭିଯାତ୍ରୀଦଳ ଆଗକୁ ମାଡ଼ି ଚାଲିଥିଲେ । ଦଳର ସମସ୍ତଙ୍କ ଆଗରେ ଇୟାମ୍ବୁ ଚାଲିଥାଏ । ମଝିରେ ଅନ୍ୟମାନେ ଏବଂ ସବାପଛରେ ପ୍ରଫେସର, କ୍ୟାପ୍‌ଟେନ୍ ଓ ରବିନ୍‌ସନ୍ । ଏହିଭଳି ଭାବରେ ଚାଲୁଚାଲୁ ପ୍ରଥମେ କ୍ୟାପ୍‌ଟେନ୍ ନୀରବତା ଭଙ୍ଗ କରି କହିଲେ - ''ଏଭଳି ଶରୀର ନେଇ ଏପରି ଶତ୍ରୁଘେରା ଅରଣ୍ୟ ମଧ୍ୟରେ ଏ ନିରୀହ 'ବ୍ରାକିଓସରାସ୍' ବଂଚିବା ମୁସ୍କିଲ ।

ଶତ୍ରୁକୁ ପ୍ରତିରୋଧ କରିବାର ସାମାନ୍ୟ ବ୍ୟବସ୍ଥା ମଧ୍ୟ ଭଗବାନ ତାକୁ ଦେଇନାହାନ୍ତି । ମାଂସାଶୀ ପ୍ରାଣୀମାନଙ୍କ ପାଇଁ ଏହା ନିଶ୍ଚୟ ଏକ ପକ୍ଷପାତିତା ।''

ପ୍ରଫେସର କହିଲେ - ''ପକ୍ଷପାତିତା ନୁହେଁ କ୍ୟାପ୍‌ଟେନ୍ । ଏହା ହେଉଛି ପ୍ରକୃତିର ନିୟମ । ଜୁରାସିକ୍ ଯୁଗରେ ଏକ ସମୟରେ 'ବ୍ରାକିଓସରାସ୍' ମାନଙ୍କ ଭଳି ଅତିକାୟ ନିରାମିଷାଶୀ ପ୍ରାଣୀମାନଙ୍କ ବଂଶ ଅତ୍ୟଧିକ ବଢ଼ିଯାଇଥିଲା । ଏଣୁ ସେମାନଙ୍କ ସଂଖ୍ୟା ନିୟନ୍ତ୍ରଣ କରି ମାଂସାଶୀ ପ୍ରାଣୀମାନଙ୍କର ବଂଶ ବୃଦ୍ଧି ହେବାକୁ ଲାଗିଲା । ଜୀବଜଗତରେ ଭାରସାମ୍ୟ ରକ୍ଷା କରିବାପାଇଁ ପ୍ରକୃତି ନିଜର ନିୟମାନୁସାରେ ଏପରି ବ୍ୟବସ୍ଥା କରିଥିଲା । ବିଶ୍ୱର ଚାରିଆଡ଼େ ଆଖି ବୁଲାଇ ଦେଖିଲେ ଏହିଭଳି ପରିସ୍ଥିତି ଆମ ନଜରକୁ ସବୁବେଳେ ଆସେ ।''

''କିନ୍ତୁ ହାୟ, ଆମ ମନୁଷ୍ୟ ସମାଜ ଜ୍ଞାନବିଜ୍ଞାନର ଅଗ୍ରଗତି ଘଟାଇ ପ୍ରକୃତିର ଚିରାଚରିତ ବ୍ୟବସ୍ଥାର ବିପର୍ଯ୍ୟୟ ଘଟାଇ ଚାଲିଛି । ଫଳରେ ନିଜେ ହିଁ ନିଜପାଇଁ ମୃତ୍ୟୁର ଗାତଖୋଳି ଚାଲିଛି । ଏସବୁ ଜ୍ଞାନକୁ ଠିକ୍‌ଭାବରେ ହୃଦୟଙ୍ଗମ ନକରି ନିଜର ଦମ୍ଭ ଦେଖାଇ ଚାଲିଛି । କିନ୍ତୁ ମନେରଖ, ପ୍ରକୃତିର ପ୍ରତିଶୋଧ ବଳରେ ଆଜିର ମଣିଷ ସମାଜ ଦିନେ ନା ଦିନେ ଯେ' ରସାତଳଗାମୀ ହେବ, ଏହା ନିଃସନ୍ଦେହ ।

ଚଉଦକୋଟି ବର୍ଷରୁ ଅଧିକ ସମୟ ହେବ, ଏହି ଡାଇନୋସରମାନେ ପୃଥିବୀମାଟିରେ ତାଙ୍କର ଆଧିପତ୍ୟ ବିସ୍ତାର କରିଚାଲିଥିଲେ । ବିଶ୍ୱର ଚାରିଆଡ଼େ ଅର୍ଥାତ୍ ଜଳ ଓ ସ୍ଥଳରେ ସେମାନେ ସ୍ୱାଧୀନ ଭାବରେ ଚଲାବୁଲା କରୁଥିଲେ । ତାଙ୍କ ସାମନାରେ ମଥାଟେକି ଠିଆ ହେବା ଭଳି କୌଣସି ପ୍ରାଣୀ ନଥିଲେ । ଫଳରେ ପ୍ରକୃତିର ସୁଶୃଙ୍ଖଳ ନିୟମ କାନୁନ୍‌ରେ ଆଧୁନିକ ମନୁଷ୍ୟଭଳି ସେମାନେ ଚରମ ବିପର୍ଯ୍ୟୟ ସୃଷ୍ଟିକଲେ । ପରିଣାମରେ ସେମାନଙ୍କର ଦଶା କ'ଣ ହେଲା- ଏହା ତ ଆପଣମାନଙ୍କୁ ଭଲଭାବରେ ଜଣା । ଆଜିଠାରୁ ସାଢ଼େ ଛ'କୋଟି ବର୍ଷ ପୂର୍ବେ- ଅକସ୍ମାତ୍ ଡାଇନୋସରମାନଙ୍କ ଉପରେ ପ୍ରକୃତିର କ୍ରୋଧ ଓହ୍ଲାଇ ଆସିଲା । ସେଥିରେ ସେମାନେ ସଂପୂର୍ଣ୍ଣ ଭାବରେ ନିଶ୍ଚିହ୍ନ ହୋଇଯାଇଥିଲେ ।

ପୃଥିବୀବକ୍ଷରେ ମନୁଷ୍ୟ ଜଳ, ସ୍ଥଳ ଓ ଆକାଶ- ସବୁଆଡ଼େ ଆଧିପତ୍ୟ ବିସ୍ତାର କରିଛି । ଦେଖିବେ, ମନୁଷ୍ୟ ଯଦି ଅଟକି ନଯାଏ, ପ୍ରକୃତି ରାଇଜର ସବୁକ୍ଷେତ୍ରରେ ଭାରସାମ୍ୟ ଫେରାଇ ଆଣିବାର ଚେଷ୍ଟା ନକରେ, ତା' ଉପରେ ଦିନେ ନା ଦିନେ ଏହି ପ୍ରକୃତିର କ୍ରୋଧ ଓହ୍ଲାଇ ଆସିବ ଏବଂ ମନୁଷ୍ୟ ସମାଜକୁ ଧ୍ୱଂସମୁଖକୁ ଟାଣିନେବ । ତାହାପରେ ପୃଥିବୀବକ୍ଷରେ ସୃଷ୍ଟି ହେବ ଜୀବନର ନୂଆଧାରା ।''

ପ୍ରଫେସର କଥା କହୁ କହୁ ଯେପରି ଭାବରେ ତନ୍ମୟ ହୋଇଯାଇଥିଲେ । କ୍ୟାପ୍‌ଟେନ୍‌ଙ୍କର ପରବର୍ତ୍ତୀ ପ୍ରଶ୍ନ ତାଙ୍କୁ ପୁଣି ଚିନ୍ତାରାଜ୍ୟରୁ ଫେରାଇ ଆଣିଲା ।

କ୍ୟାପ୍‌ଟେନ୍ କହିଲେ - ''ସାଢ଼େ ଛ' କୋଟି ବର୍ଷ ତଳେ ଡାଇନୋସରମାନେ ନିଶ୍ଚିହ୍ନ ହୋଇଯାଇଥିଲେ ବୋଲି ତ କହୁଛନ୍ତି । ତେବେ, ବର୍ତ୍ତମାନ ମୁଁ ଏଠାରେ ଦେଖୁଛି ସେହି



ଡାଇନୋସରମାନଙ୍କ ରାଜତ୍ୱ । ଏମାନେ କ'ଣ ସେହି ସୁଦୂର ଅତୀତର ଡାଇନୋସରମାନଙ୍କର କୌଣସି ବିବର୍ତ୍ତିତ ବଂଶଧର ?

ପ୍ରଫେସର କହିଲେ - ''ରବିନ୍‌ସନ୍, ଜୁରାସିକ୍ ଦ୍ୱୀପ ବୋଲି ନାମ ଦେଇଥିବା ଏହି ଦ୍ୱୀପ ଏବଂ ଅରଣ୍ୟ - ପ୍ରକୃତିର ଏକ ରହସ୍ୟମୟ ଲୀଳାର ନିକେତନ । ଅତୀତର ସେହି ଜୁରାସିକ୍ ଯୁଗଟାକୁ ସତେ ଯେପରି କେହି ଏଠାରେ ଆଣି ବସାଇ ଦେଇଛି । କୌଣସି ବିବର୍ତ୍ତିତ ରୂପରେ ନୁହେଁ - ସ୍ୱରୂପରେ ଏବଂ ସ୍ୱମହିମାରେ । ସମ୍ପୂର୍ଣ୍ଣ ଅପରିବର୍ତ୍ତିତ କଳେବର ଧରି ପ୍ରାକ୍-ଐତିହାସିକ ଯୁଗର ଡ଼ାଇନୋସରମାନେ ଏଠାରେ ବର୍ତ୍ତମାନ ଦେଖିବାକୁ ମିଳୁଛନ୍ତି । ଆମ୍ଭମାନଙ୍କର ବିଜ୍ଞାନ ପୁସ୍ତକରେ ଏମାନଙ୍କର ଚିତ୍ର ଆଗରୁ ମୁଦ୍ରିତ ହୋଇରହିଛି । ବିଶେଷଜ୍ଞମାନେ ସେମାନଙ୍କର ଯଥାର୍ଥ ନାମକରଣ ମଧ୍ୟ କରିଅଛନ୍ତି । ଛବି ସହିତ ସମାନ ତାଳ ଦେଇ ଜୀବନ୍ତ ରୂପ ଆଖି ସାମନାରେ ଦେଖିବାକୁ ମିଳୁଛି ବୋଲି ସେମାନଙ୍କର ନାମ ମଧ୍ୟ ସଙ୍ଗେ ସଙ୍ଗେ ମନେ ପଡ଼ିଯାଉଛି ।''

ତା'ପରେ ରବିନ୍‌ସନ୍ ପଚାରିଲେ - 'ବ୍ରାକିଓସରାସ୍‌କୁ ଯେଉଁ ଡାଇନୋସରଟି ମାରିଦେଲା, ତା' ସମ୍ପର୍କରେ କିଛି କହିଲେ ନାହିଁ ତ ?''

ପ୍ରଫେସର କହିଲେ - "କହିବା ଭଳି ଅବସ୍ଥାରେ ମୁଁ ନ ଥିଲି । ସେହି ଘଟଣାଟି ଅତି ଅକସ୍ମାତ୍ ଭାବରେ ଘଟିଗଲା । ଆପଣମାନଙ୍କ ଭଳି ମୁଁ ମଧ ଭାବବିହ୍ୱଳ ହୋଇଯାଇଥିଲି । ପିଙ୍ଗଳ ଚମଡ଼ା ଉପରେ ଛପା ଛପା ଦାଗ ଥିବା ଦାନବ ସଦୃଶ ଏହି ଡାଇନୋସରର ନାମ "ଅଲ୍ଲୋସରାସ୍" । ପ୍ରାୟ ପନ୍ଦରରୁ ତେର କୋଟି ବର୍ଷ ପୂର୍ବେ ପୃଥିବୀରେ ଏହାର ଆବିର୍ଭାବ ଥିଲା, ଅତିକାୟ ମାଂସାଶୀ ଡାଇନୋସରମାନଙ୍କ ମଧରେ ଏହା ଅନ୍ୟତମ ଥିଲା । ଏହାର ମଧ ଅନ୍ୟ ଏକ ସ୍ୱଜାତିର ଡାଇନୋସର ଅଛି । ତାହାର ନାମ ହେଉଛି 'ସିରେଟୋସରାସ୍' । ପ୍ରଧାନତଃ ନିରାମିଷଭୋଜୀ ଡାଇନୋସରମାନଙ୍କୁ ମାରି ଏହା ଜୀବନଧାରଣ କରୁଥିଲା । ବିବର୍ତ୍ତନବାଦର ନିୟମ ଲଙ୍ଘନ କରି କିଭଳି ଭାବରେ ଯେ ଏଗୁଡ଼ିକ ବର୍ତ୍ତମାନ ବଞ୍ଚି ରହିଛନ୍ତି, ତାହା ସବୁବେଳେ ମୋ ମନରେ ପ୍ରଶ୍ନ ଉଙ୍କିମାରୁଛି । ଏହି ସମୟରେ ଅନ୍ୟ ଏକ ଆଶଙ୍କାର ଛାୟା ମଧ ମୋ ଆଖି ସାମନାକୁ ଭାସି ଆସୁଛି ।"

ରବିନ୍‌ସନ୍ ସବିସ୍ମୟରେ ପଚାରିଲେ - "ଆଶଙ୍କା କାହିଁକି, ପ୍ରଫେସର ?"

ପ୍ରଫେସର ଯେପରି କିଛିକ୍ଷଣ ପାଇଁ ଚିନ୍ତାର ଅତଳ ଗର୍ଭରେ ବୁଡିଯାଇଥିଲେ । ରବିନ୍‌ସନ୍‌ଙ୍କ କଥା ତାଙ୍କର କର୍ଣ୍ଣଗୋଚର ହେଲା ନାହିଁ ।

ରବିନ୍‌ସନ୍‌ଙ୍କର ପ୍ରଶ୍ନର ସୂତ୍ରଧରି କ୍ୟାପ୍‌ଟେନ୍ କହିଲେ - "ରହସ୍ୟଘେରା ଏହି ଦ୍ୱୀପର ଭବିଷ୍ୟତ ପରିଣତି ବିଷୟ ଆପଣ ନିଶ୍ଚୟ ଭାବୁଛନ୍ତି ।"

ଏ କଥାଶୁଣି ପ୍ରଫେସର ସଜାଗ ହେଲେ ଏବଂ କହିଲେ - "ଠିକ୍ ଧରିଛନ୍ତି, ମନୁଷ୍ୟ ହାତରେ ଏହି ଦ୍ୱୀପଭୂମିର ପରିଣତି ଯାହା ଘଟିବ, ତାହା ଅତି ସହଜରେ ମୁଁ କଳ୍ପନା କରିପାରୁଛି । ଏହି ଅତି-ଆଶ୍ଚର୍ଯ୍ୟ ଏବଂ ଅଭୁତପୂର୍ବ ଆବିଷ୍କାରର ସମ୍ବାଦ ଆମ୍ଭମାନଙ୍କ ଦ୍ୱାରା ଯେ ଆଜିର ମାନବ ସମାଜ ନିକଟରେ ପ୍ରଚାରିତ ହୋଇଯିବ, ତାହା ନିରାଟ ସତକଥା । ଆମ୍ଭେମାନେ ନିଶ୍ଚିତଭାବରେ ଜୁରାସିକ୍ ଦ୍ୱୀପର ସମ୍ବାଦ ଜଣାଇଦେବା - କିନ୍ତୁ ମନରେ ସଂଶୟ ଜାତ ହେଉଛି ଯେ ଏହାର ରକ୍ଷାର ଦାୟିତ୍ୱ ଆମେ ନେଇ ପାରିବା ନାହିଁ କି ସେ କ୍ଷମତା ଆମ୍ଭର ନାହିଁ... ।

ଏହାପରେ ଦଳ ଦଳ ହୋଇ କୌତୁହଳୀ ମନୁଷ୍ୟ ଏବଂ ବିଜ୍ଞାନୀମାନେ ନିଶ୍ଚୟ ଏଠାକୁ ଧାଇଁ ଆସିବେ । ସାରା ବିଶ୍ୱର ମାନବସମାଜ ଦ୍ୱୀପଟି ସମ୍ପର୍କରେ ତତ୍ପର ହୋଇଉଠିବେ । ଆକାଶମାର୍ଗରେ ଉଡ଼ାଜାହାଜ ଓ ଜଳଭାଗରେ ଜଳଜାହାଜର ଭିଡ଼ ଜମିଗଲେ, ଚୀନ୍ ସମୁଦ୍ରର ଏହି ପରିବେଶ କିପରି ରୂପ ଧାରଣ କରିବ ତାହା ବୁଝିପାରୁଛନ୍ତି ?

ଏଠାକାର ଅରଣ୍ୟର ପ୍ରକୃତି କୋଳରେ ଲାଳନପାଳନ ହେଉଥିବା ବନ୍ୟମନୁଷ୍ୟମାନଙ୍କର ସହଜ ସରଳ ଜୀବନଧାରା ଧ୍ୱଂସ ହୋଇଯିବ । ଚୋରା ଶିକାରୀ ଓ ଦାୟିତ୍ୱହୀନ ବିଜ୍ଞାନକର୍ମୀମାନଙ୍କ ଦ୍ୱାରା ଅରଣ୍ୟର ଜୀବନଧାରା ବିପର୍ଯ୍ୟସ୍ତ ହୋଇଯିବ । ସେଠାରେ କେହି ବାଧା ଦେବାକୁ ନଥିବେ । ଜୁରାସିକ୍ ଯୁଗର ଅତ୍ୟାଶ୍ଚର୍ଯ୍ୟର ଶେଷ ଜହ୍ନ ଟିକକ ମଧ ଶେଷରେ ପୃଥିବୀବକ୍ଷରୁ ନିଶ୍ଚିହ୍ନ

ହୋଇଯିବ । ମୁଁ ଭାବିପାରୁଛି କ୍ୟାପ୍‌ଟେନ୍, ଖୁବ୍ ଅଳ୍ପ ଦିନ ମଧ୍ୟରେ ଏହି ଦୁଃଖଦାୟକ ପରିସ୍ଥିତି ଘଟିବ । ଆଉ ସେହି ନୃଶଂସ ଅମାର୍ଜନୀୟ ପରିସ୍ଥିତିର ହେତୁ ଆମ୍ଭେମାନେ ।''

**ପ୍ରତ୍ୟାବର୍ତ୍ତନ :**

ପ୍ରଫେସରଙ୍କ ବେଦନା ସହିତ ଅନ୍ତରର ଗଭୀର ବାଣୀଗୁଡ଼ିକ ରବିନ୍‌ସନ୍ ଓ କ୍ୟାପ୍‌ଟେନ୍‌ଙ୍କର ଅନ୍ତର ସ୍ପର୍ଶ କଲା । କିଛି କ୍ଷଣ ପାଇଁ ସେମାନଙ୍କ ମୁଣ୍ଡକୁ କୌଣସି କଥା ଆସିଲା ନାହିଁ ।

ତା'ପରେ କ୍ୟାପ୍‌ଟେନ୍ କହିଲେ - ''ନା ପ୍ରଫେସର, ମନୁଷ୍ୟ ଉପରେ ଏପରି ବିଶ୍ୱାସ ହରାଇ ଆପଣ ଅଯଥାରେ କଷ୍ଟ ଅନୁଭବ କରୁଛନ୍ତି । ରବିନ୍‌ସନ୍‌ଙ୍କର ଏହି ଜୁରାସିକ୍ ଦ୍ୱୀପ ହେବ ଆନ୍ତର୍ଜାତିକ ସଂରକ୍ଷିତ ଅରଣ୍ୟାଞ୍ଚଳ ଏବଂ ସାମଗ୍ରିକ ଜୁରାସିକ୍ ଅଭୟାରଣ୍ୟ ରୂପେ ପରିଗଣିତ ହେବ । ଏହି ଦ୍ୱୀପର ରକ୍ଷଣାବେକ୍ଷଣ ଦାୟିତ୍ୱ ରହିବ ବିଶ୍ୱର ସବୁ ରାଷ୍ଟ୍ରମାନଙ୍କ ଉପରେ, ସମ୍ମିଳିତ ଭାବରେ । ଗୋଟିଏ ବାକ୍ୟରେ କହିଲେ ସମଗ୍ର ମାନବ ଜାତିର ଏହାହେବ ସର୍ବାଧୁନିକ ଆବିଷ୍କାର ଓ ବିଜ୍ଞାନ ହେବ ଏହାର ପ୍ରହରୀ ଓ ତତ୍ତ୍ୱାବଧାରକ । ଜୁରାସିକ୍ ଦ୍ୱୀପ ତା'ର ବକ୍ଷରେ ସମସ୍ତ ସମ୍ପଦ ନେଇ ପୂର୍ବଭଳି ବଞ୍ଚିରହିବ, ଯେପରି ଭାବରେ ଏତେ ବର୍ଷ ଯାଏଁ ବଞ୍ଚି ରହିଛି... ।''

ରବିନ୍‌ସନ୍‌ଙ୍କ କଥାର ଅର୍ଥ ଇୟାମୁ ବୋଧେ ବୁଝିପାରିଲା । ତେଣୁ ସେ ଆନନ୍ଦରେ ନାଚିଗଲା ।

ଜୁମିନା ଧାଇଁ ଆସି ପ୍ରଫେସରଙ୍କ ନିକଟରେ ଠିଆ ହେଲା ଏବଂ କହିଲା - ''ପ୍ରଫେସର ଆମେ ନିରାପଦ ସ୍ଥାନରେ ପହଞ୍ଚି ଯାଇଛୁ- ଏହି ଦେଖନ୍ତୁ, ଏହି ଗଛର ଫାଙ୍କ ଦେଇ ଚାହିଁଲେ ପ୍ରାଚୀରଟି ଦେଖାଯାଉଛି... ।''

ସମସ୍ତଙ୍କ ମନ ମୁକ୍ତିର ଆନନ୍ଦରେ ଉଜ୍ଜ୍ୱଳ ହୋଇଉଠିଲା । ଜୁମିନା ନିଜର ଅଜାଣତରେ ଥରେ ପଛରେ ଛାଡ଼ିଦେଇ ଆସୁଥିବା ନିବିଡ଼ ଅରଣ୍ୟଆଡ଼କୁ ମୁହଁ ଫେରାଇଲେ । ତାଙ୍କ ମନରେ ଜାୟାଣ୍ଟୋ କଥା ଜାଗି ଉଠିଲା । ସେହି ଜୀବଟି ଥିଲା ଏକ ଜୀବନ୍ତ ଆତଙ୍କ । ଏତେ ସହଜରେ ତା' କବଳରୁ ଯେ' ମୁକ୍ତି ପାଇପାରିବେ, ତାହା ଜୁମିନା କେବେ ବି ବିଶ୍ୱାସ କରିପାରି ନଥିଲା । ଜାୟାଣ୍ଟୋ ହାତରେ ଘୁରୁଥିବାବେଳେ ସ୍ୱାମୀ ଓ ତାଙ୍କର ଦଳର ଲୋକମାନଙ୍କ ସହିତ ପୁଣି ସାକ୍ଷାତ ହେବ ବୋଲି ସେ ଚିନ୍ତା କରିବାକୁ ଭୁଲି ଯାଇଥିଲେ । କିଛିକ୍ଷଣ ପୂର୍ବର ସେଇ ସ୍ମୃତି ବର୍ତ୍ତମାନ ସ୍ୱପ୍ନଭଳି ଜଣାପଡୁଛି ।

ଜୁମିନା ନିଶ୍ଚିନ୍ତ ହେଲା । ନା - ଜାୟାଣ୍ଟୋ ଆଉ ତାକୁ ଦେଖିବାକୁ ପାଇବ ନାହିଁ । ସେ ବର୍ତ୍ତମାନ ସମ୍ପୂର୍ଣ୍ଣଭାବରେ ତା'ର ଆୟତ୍ତର ବାହାରେ ପହଞ୍ଚି ପାରିଛନ୍ତି । ବର୍ତ୍ତମାନ ଯାଏ ତା'ର ବିକଟ ଶବ୍ଦ କେହି ଶୁଣିବାକୁ ପାଇନାହାନ୍ତି । ପ୍ରାୟ ସ୍ମୋକ୍ ବମ୍‌ର ଧୂଆଁରେ ସେ ଦିଗଭ୍ରାନ୍ତ ହୋଇଯାଇଛି ନଚେତ୍ ବୋମା ଶବ୍ଦରେ ସେ ଭୟ ପାଇ ତା'ର ନିଜର ବାସସ୍ଥାନକୁ ଫେରିଯାଇଛି ।

ପ୍ରଫେସରଙ୍କ ନିକଟରେ ଚାଲୁଚାଲୁ ଜୁମିନା ଏହିପରି ନାନା ପ୍ରକାର ଚିନ୍ତା କରିଚାଲିଥାଏ । ଏହି ସମୟରେ ରବିନ୍‌ସନ୍ ପଚାରିଲେ - ''ପ୍ରଫେସର, ଇୟାମୁର ବ୍ୟବସ୍ଥା ତା' ହେଲେ କ'ଣ

ହେବ ? ତା'ର ଝିଅକୁ ନେଇ ସେ ଯଦି ଆମ୍ଭମାନଙ୍କ ନିକଟକୁ ଚାଲିଆସେ, ତାହାହେଲେ ଗ୍ରାମର ଲୋକମାନେ ଏବଂ ରାଜା ଆମ୍ଭମାନଙ୍କୁ ବାଧା ଦେବାଟା ପାଇଁ ବିଚିତ୍ର ନୁହେଁ।''

ପ୍ରଫେସର କହିଲେ - ''ସେଥିପାଇଁ ଉପାୟ ସ୍ଥିର କରି ସେ ଆମ ସାଥିରେ ଯୋଗଦେଇଛି। ତା' ଝିଅ ଆଉ ବସ୍ତିରେ ନାହିଁ। ସମୁଦ୍ରକୂଳର ଜଙ୍ଗଲ ଭିତରେ ସେ ଝିଅକୁ ଲୁଚାଇ ରଖି ଆସିଛି। ତା'ର ସନ୍ଧାନ ଅନ୍ୟ କେହି ଜାଣନ୍ତି ନାହିଁ। ଇୟାମ୍ବୁ ବନାଚାରୀ ହେଲେ ମଧ ତା' ମୁଣ୍ଡରେ ମସଲା ଅଛି।'' ଏହା କହୁ କହୁ ପ୍ରଫେସର ଇୟାମ୍ବୁକୁ ଜଙ୍ଗଲୀ ଭାଷାରେ ଡାକିଲେ। ସଙ୍ଗେ ସଙ୍ଗେ ସେ ଆସି ପାଖରେ ଛିଡ଼ା ହେଲା।''

ପ୍ରଫେସର କହିଲେ - ''ଆମେ ବର୍ତ୍ତମାନ ଫାଟକ ପାର ହୋଇଯିବା, ତୁମେ କ'ଣ ଆମ ସାଥିରେ ରହିବ ?''

ଇୟାମ୍ବୁ ତା'ର ଜଙ୍ଗଲୀଭାଷାରେ ଉତ୍ତର ଦେଲା - ''ସର୍ବନାଶ, ତାହାହେଲେ ତ ମୁଁ ରାଜା ଏବଂ ପୁରୋହିତଙ୍କର ଦୃଷ୍ଟିରେ ପଡ଼ିଯିବି। ସେମାନେ ଏହି ଜଙ୍ଗଲ ମଧ୍ୟରେ ଲୁଚି କରି ଆପଣମାନଙ୍କ ଉପରେ କଡ଼ା ନଜର ରଖିଛନ୍ତି। କିନ୍ତୁ ଆପଣମାନଙ୍କ ହାତରେ ଯେଉଁ ମାରଣାସ୍ତ୍ର ରହିଛି, ତାହାକୁ ଦେଖି ସେମାନେ ବହୁତ ଭୟ ପାଇଯାଇଛନ୍ତି। କାରଣ ଏହା ସେମାନଙ୍କର ବହୁ ଲୋକଙ୍କୁ ମୃତ୍ୟୁ ପଥରେ ପଥିକ କରିଛି। ସେମାନେ ଆଉ ସହଜରେ ସାମନାକୁ ଆସିବେ ନାହିଁ। ବରଂ ଦୂରରେ ରହି ପ୍ରତିଶୋଧ ନେବାକୁ ଚେଷ୍ଟା କରିବେ। କିଛି ନହେଲେ ଏଭଳି ପରିସ୍ଥିତି ସେମାନେ କରିବେ, ଯାହାଫଳରେ କି ଆପଣମାନେ ଆମ ଦେଶ ଛାଡ଼ି ଚାଲିଯିବାକୁ ବାଧ୍ୟ ହେବେ।''

- ''ତୁମେ ତାହାହେଲେ କ'ଣ କରିବ ?''-

ଇୟାମ୍ବୁ କହିଲା - ''ଆପଣମାନଙ୍କର ଡଙ୍ଗା ଯେଉଁଠି ରଖାଯାଇଛି, ସେହିଠାରେ ହିଁ ମୋର ଦେଖାହେବ। ମୁଁ ବର୍ତ୍ତମାନ ଆପଣମାନଙ୍କ ସହିତ ନ ଯାଇ ଅନ୍ୟ ବାଟ ଦେଇ ପାଚେରୀ ଡେଇଁ ଆରପାଖକୁ ଚାଲିଯିବି। ସେଠାରେ ଦଉଡ଼ି ଝୁଲାଇ ରଖି ଆସିଛି। କେହି ତା'ର ପତ୍ତା ପାଇପାରିବେ ନାହିଁ। ଏହି ଆଗରେ ଫାଟକ ଦେଖାଯାଉଛି... ।''

କିଛି ଦୂରରେ ସମ୍ମୁଖରେ ଫାଟକ ପରିଷ୍କାର ଦେଖାଗଲା। ଯେଉଁ ଅଭିଯାତ୍ରୀଦଳ ସେଠାରେ ପ୍ରହରୀ ଥିଲେ ସେମାନେ ବନ୍ଧୁକ ଏପଟ ସେପଟ କରୁଥାନ୍ତି। ପ୍ରଫେସର କହିଲେ ତାହାହେଲେ - ''ଏହି କଥା ହେଲା - ତୁମେ ଏବେ ଆସିପାର -''

ଇୟାମ୍ବୁ ତା'ର ଚଳଣି ଅନୁଯାୟୀ ଇଂଗିତରେ ସମସ୍ତଙ୍କୁ ଶୁଭେଚ୍ଛା ଜଣାଇ ବିଦାୟ ଦେଲା ଏବଂ ଅଳ୍ପସମୟ ମଧ୍ୟରେ ଜଙ୍ଗଲ ମଧ୍ୟରେ ଅଦୃଶ୍ୟ ହୋଇଗଲା।

x x x x

ଯେଉଁମାନେ ଫାଟକ ପାଖରେ ଥିଲେ, ସେମାନେ ସମସ୍ତଙ୍କୁ ଦେଖି ମହା ଆନନ୍ଦରେ ପରସ୍ପରକୁ ଆଲିଙ୍ଗନ କଲେ ଏବଂ ପ୍ରଫେସର ସମସ୍ତଙ୍କୁ ନେଇ ଫାଟକ ବାହାରକୁ ଆସିଲେ।

ସମ୍ମୁଖରେ ଚଟାଣଟି ସମ୍ପୂର୍ଣ୍ଣ ଭାବେ ମୁକ୍ତ । ଜନମାନବର ଚିହ୍ନ ବର୍ଣ୍ଣ ନାହିଁ । କେବଳ କେତୋଟି ମୃତଦେହ ଭୂଇଁ ଉପରେ ପଡ଼ିରହିଥାଏ । ଜଙ୍ଗଲୀ ମନୁଷ୍ୟମାନେ ମୃତଦେହକୁ ବୋହି ନେବାର ସୁଯୋଗ ମଧ୍ୟ ପାଇପାରି ନାହାନ୍ତି । ଆଗକୁ ରାସ୍ତା ବିପଦମୁକ୍ତ । ଅଭିଯାନ ସେମାନଙ୍କର ସଫଳ ହୋଇଛି । କିନ୍ତୁ ଜଙ୍ଗଲ ମଧ୍ୟରେ ଯେଉଁ କେଇଜଣ ଅଭିଯାତ୍ରୀଙ୍କୁ ସେମାନେ ହରାଇଥିଲେ ସେହିକଥା ସମସ୍ତଙ୍କ ମନରେ ଦୁଃଖସଂଚାର କରୁଥାଏ ।

ପ୍ରଫେସର କହିଲେ - "ଏଠାରେ ଆଉ ଠିଆ ହେବା ଠିକ୍ ହେବ ନାହିଁ । ରାଜାର ଲୋକମାନେ ଆମ୍ଭମାନଙ୍କ ଉପରେ ନଜର ରଖିଛନ୍ତି । ସେମାନେ ଯେ କୌଣସି ମୁହୂର୍ତ୍ତରେ ଆମ ଉପରେ ଆକ୍ରମଣ କରିପାରନ୍ତି । ତେଣୁ ଯେତେଦୂର ସମ୍ଭବ ଆମେ ଶୀଘ୍ର ଏଠାରୁ ବିଦାୟ ନେଇଯିବା । ବର୍ତ୍ତମାନ ଫାଟକ ବନ୍ଦ କରିବାକୁ ହେବ ।"

ପ୍ରଫେସରଙ୍କ କଥାଶୁଣି ସମସ୍ତେ ଫାଟକ ବନ୍ଦ କରିବା ପାଇଁ ହାତ ଲଗାଇଲେ ଏବଂ ଖୁବ୍ ଶୀଘ୍ର ଫାଟକ ବନ୍ଦ କରିଦେଲେ । ସେଥିରେ ବଡ଼ ବଡ଼ ଗଛର ଗଣ୍ଡି ଠେଲି ଲଗାଇଦେଲେ ।

ପାଚେରୀ ଭିତରେ ଲୁକ୍କାୟିତ ହୋଇ ରହିଗଲା ଦୁଃସ୍ୱପ୍ନ ଭଳି ପ୍ରାକ୍-ଐତିହାସିକ ଅରଣ୍ୟରାଜି ।

ଯାହା ପାଇଁ ଏତେ ବିପଦ, ସେହିଁ ହେଉଛି ଜୁମିନା । ସେ ଏତେ ସମୟ ପରେ ନିଜକୁ ଯେପରି ଖୋଜି ପାଇଲେ ଏବଂ କହିଲେ - "ମୁଁ ସେତେବେଳେ ଯଦି ଜାଣିଥାନ୍ତି ଜଙ୍ଗଲୀ ମନୁଷ୍ୟ ଓ ଜାୟାଣ୍ଟୋର ହାତରୁ ଖସି ଆସିପାରିବି, ତାହାହେଲେ କ୍ୟାମେରାଟା ନେବାକୁ ଭୁଲିଯାଇ ନଥାନ୍ତି । ସେମାନଙ୍କ ଅଦ୍ଭୁତ ଛବିଗୁଡ଼ିକ ମୁଁ ହାତଛଡ଼ା କଲି ।"

ପ୍ରଫେସର ହସି ହସି କହିଲେ- "ବେଶ୍, ଭଲ କଥା । ଏଥର ତେବେ କ୍ୟାମେରାଟା ନେଇ ଜଙ୍ଗଲ ଭିତରକୁ ଚାଲିଯାଅ । ଜାୟାଣ୍ଟୋ ସହିତ ତୁମର ପ୍ରେମ ହୋଇଯାଇଥିଲା । ତେଣୁ ଏଥର ଯାଇ ତାହା ସହିତ ମିଶି ତା'ର ଛବି ତୋଳିନିଅ ।"

ରବିନ୍‌ସନ୍ ହସି ହସି କହିଲେ- "ଏଥର ଜାୟାଣ୍ଟୋ ତୁମକୁ ପାଇଲେ ପ୍ରାଣ ଥାଉ ଥାଉ ଆଉ ହାତଛଡ଼ା କରିବ ନାହିଁ । ତେଣୁ ଛବି ତୋଳି କେବଳ ନିଜେ ହିଁ ଦେଖିବ ।"

ଜୁମିନା ଗେହ୍ଲେଇ ହୋଇ କହିଲା - "ରବିନ୍, ତମର ଯଦି କିଛି ଅସୁବିଧା ନ ଥାଏ, ମୁଁ ତେବେ ଜାୟାଣ୍ଟୋର ଗୁହାରେ ରହିଯିବି । ତମସା ପାହାଡ଼ ଉପରେ ଛିଡ଼ା ହୋଇ ନିଶ୍ଚୟ ତୁମର ଜାହାଜ ଦେଖିବାକୁ ପାଇବି ।"

ଏହିପରି କଥା କହୁ କହୁ ସମସ୍ତେ ଖୋଲା ଚଟାଣ ପାର ହୋଇ ସମୁଦ୍ର କୂଳରେ କଣ୍ଟାବୁଦା ଜଙ୍ଗଲରେ ପାଦ ପକାଇଲେ । ଏହି କ୍ଷୁଦ୍ର ଜଙ୍ଗଲଟି ସମୁଦ୍ର କୂଳକୁ ପ୍ରାୟ ଲାଗିଯାଇଥାଏ । ଏହାରି ମଧ୍ୟରେ ରାସ୍ତା ଖୋଜି କିଛି ବାଟ ଚାଲିବାକୁ ହେବ ।

ସୂର୍ଯ୍ୟ ପଶ୍ଚିମ ଆକାଶରେ ଅସ୍ତ ଯିବାକୁ ବସିଲେଣି । ତାଙ୍କର ରଶ୍ମି ମାଟି ଉପରେ ଅସ୍ପଷ୍ଟ ହୋଇଗଲାଣି । ଜଙ୍ଗଲ ଭିତରେ ଅନ୍ଧକାର ହେବାକୁ ଲାଗିଲାଣି ।

ହଠାତ୍ ଚତୁର୍ଦ୍ଦିଗ ପ୍ରକମ୍ପିତ କରି ଜାୟାଣ୍ଟୋର ଗର୍ଜନ ସହିତ ବିକଟ ଶବ୍ଦ ସମସ୍ତେ ଶୁଣିବାକୁ ପାଇଲେ । ବାରମ୍ବାର ଏହି ଶବ୍ଦ ଶୁଣାଗଲା । ଜୁମିନା ଭୟରେ ଆର୍ତ୍ତନାଦ କରି ରବିନ୍‌ସନ୍‌କୁ କୁଣ୍ଢାଇ ଧରିଲା । ପ୍ରଫେସରଙ୍କ ସହିତ ସମସ୍ତେ ସ୍ତବ୍ଧ ଭାବରେ ଠିଆ ହୋଇ ପଛକୁ ଅନାଇଲେ ।

ସେତେବେଳକୁ ସମସ୍ତେ ଫାଟକରୁ କିଛି ଦୂରକୁ ଚାଲି ଆସିଲେଣି । ପ୍ରଫେସରଙ୍କ କାନ୍ଧରେ ତାଙ୍କର ବ୍ୟାଗଟି ଝୁଲି ରହିଥିଲା । ସଙ୍ଗେ ସଙ୍ଗେ ବ୍ୟାଗ୍ ଭିତରୁ ସେ ଦୁଇଟି ସ୍ମୋକ୍ ବମ୍ ବାହାର କଲେ । କାହାରିକୁ କିଛି ନ କହି କିଛି ବାଟ ପଛକୁ ଯାଇ ଫାଟକ ନିକଟକୁ ଲକ୍ଷ୍ୟ କରି ତାହା ନିକ୍ଷେପ କଲେ । ମାଟି ବିସ୍ଫୋରିତ କରି ଦୁଇଟି ବୋମା ଫାଟିଯିବା ସଙ୍ଗେ ସଙ୍ଗେ ଚାରିଆଡ଼େ ଧୂଆଁରେ ଘେରିଗଲା । ତତ୍ ସଙ୍ଗେ ସଙ୍ଗେ ଜାୟାଣ୍ଟୋର ଗର୍ଜନ ଓ ଫାଟକରେ ଆଘାତ ଶବ୍ଦ ମୁହୁର୍ମୁହୁଃ ଶୁଣାଗଲା ।



ପ୍ରଫେସର ଫେରିଆସି କହିଲେ - "ଆଉ ଏଠାରେ ଏକ ମୁହୂର୍ତ୍ତେ ମଧ ରହିବା ସମ୍ଭବ ନୁହେଁ । ଜାୟାଣ୍ଟୋର ଆଘାତରେ ଫାଟକର ପରିଣତି କ'ଣ ହେବ କହିହେବ ନାହିଁ ।"

ଠିକ୍ ଏତିକିବେଳେ ଇୟାମ୍ବୁ ଦଉଡ଼ିଆସି ପ୍ରଫେସରଙ୍କ ନିକଟରେ ପହଞ୍ଚିଗଲା ଏବଂ ଧଇଁସଇଁ ହୋଇ କ'ଣ ସବୁ କହିଗଲା । ଦାନବର ଗର୍ଜନ ଶୁଣି ସେ ଧାଇଁଆସିଛି ।

ପ୍ରଫେସର ଇୟାମ୍ବୁକୁ ପଚାରିଲେ - "ତୁମର ଝିଅ କାହିଁ ?"

ଇୟାମ୍ବୁ କହିଲା- "ତାକୁ ମୁଁ ଆପଣଙ୍କର ଡଙ୍ଗାରେ ବସାଇ ଦେଇଆସିଛି ।"

- "ତାହାହେଲେ ଚାଲ । ଏଥର ସମସ୍ତେ ଜାହାଜ ଉପରକୁ ପଳାଇଯିବା ।"-

ପ୍ରଫେସର ସମସ୍ତଙ୍କୁ ସଙ୍ଗରେ ନେଇ ଦ୍ରୁତଗତିରେ ଜାହାଜ ଦିଗରେ ଚାଲିବାକୁ ଲାଗିଲେ ।

●




ଡାଇନୋସରମାନଙ୍କର ବିବର୍ତ୍ତନବାଦ

